ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା-୧

କବି ବଳରାମ ଦାସ-ବିରଚିତ

# ଶ୍ରୀବୋଷା

ବା

## ରୁକ୍ମିଣୀ ବିବାହ ଲେଖନ

Digitized by srujanika@gmail.com

ଓଡ଼ିଆ ଗବେଷଣା ପରିଷଦ
The Institute of Oriya Studies,
Saraswat Nilay, Chhatrabazar, Cuttack-3
Regd. No. C. T. C. 290-290/1980-81

ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା

ସଂପାଦକ-ମଣ୍ଡଳୀ :

ଡକ୍ଟର କୃଷ୍ଣଚରଣ ବେହେରା
ଡକ୍ଟର ନରେନ୍ଦ୍ରନାଥ ମିଶ୍ର
ଡକ୍ଟର ହେମନ୍ତ କୁମାର ଦାସ

ସଂପାଦକ :

ଡକ୍ଟର କ୍ଷେତ୍ରବାସୀ ନାୟକ

Digitized by srujanika@gmail.com

କବି ବଳରାମ ଦାସ-ବିରଚିତ

# ଶ୍ରୀଚୋଢ଼ା

ବା

## ରୁକ୍ମିଣୀ ବିବାହ ଲେଖନ

ସଂଗ୍ରହ ଓ ସମ୍ପାଦନା
ଡକ୍ଟର ମନୀନ୍ଦ୍ର ମହାନ୍ତି




୧୯୮୧
ଓଡ଼ିଆ ଗବେଷଣା ପରିଷଦ
ସାରସ୍ୱତ ନିଳୟ, ଛତ୍ରବଜାର, କଟକ-୭୫୩୦୦୩

Digitized by srujanika@gmail.com

ଶ୍ରୀରୋଢ଼ା ବା ରୁକ୍ମଣୀ ବିବାହ ଲେଖନ

ପ୍ରଥମ ପ୍ରକାଶ ଅକ୍ଟୋବର, ୧୯୮୧

ମୁଦ୍ରଣ ମେଘମାଳା ପ୍ରିଣ୍ଟର୍ସ, କଟକ-୭୫୩୦୦୧

ପ୍ରଚ୍ଛଦସଜ୍ଜା ଶିଳ୍ପୀ ଶ୍ରୀ ଉଦୟନାରାୟଣ ଜେନା

ପରିବେଷକ : ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧, କଟକ-୨
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨

ପରିଷଦ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ

ମୂଲ୍ୟ : **ପାଞ୍ଚଟଙ୍କା ମାତ୍ର**

*The Institute fo Oriya Studies*
*Publication No-1*

**Sri Roddha or Rukvoni Bibaha Lekhana**

*by late poet Balaram Das*
*Edited by : Manindra Mahanty Ph. D.*
*Published in October, 1981*
*Distributor : Pustak Bhandar,*
*and*
*Friends Publishers, Cuttack-2*

**Price : Rs. Five only**

Digitized by srujanika@gmail.com

# ଉତ୍ସର୍ଗ

ସମ୍ବଲପୁରରେ ଅବସ୍ଥାନ ବେଳେ ଯେଉଁ ବୟୋବୃଦ୍ଧ କବିଙ୍କର ନିଷ୍କପଟ ସ୍ନେହ ପାଇ-ଥିଲି, ସେହି ନୀରବ ସାଧକ, ମାତୃଭାଷାର ପରମ ସେବକ ସ୍ୱର୍ଗୀୟ ସତ୍ୟନାରାୟଣ ବହିଦାର, ବି. ଏ., ଡି. ଇଡ଼୍.ଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ—

ମନୀନ୍ଦ୍ର ମହାନ୍ତି

Digitized by srujanika@gmail.com

# ସମ୍ପାଦକୀୟ

ମାନବ-ସଭ୍ୟତାର ଇତିହାସରେ ଉତ୍କୃଷ୍ଟ ଗ୍ରନ୍ଥର ଗୁରୁତ୍ୱ ସର୍ବଦା ସ୍ୱୀକୃତ ହୋଇଆସିଛି । କେହି କେହି ଏହାକୁ ମଣିଷର 'ଜୀବନ-ବେଦ' କହିଥିଲେ ବେଳେ ଆଜି କେହି କେହି କହିଛନ୍ତି— 'ଶୋଷିତ ସମାଜର ଅମୋଘ ଅସ୍ତ୍ର' । କିନ୍ତୁ ଉତ୍କୃଷ୍ଟ ଗ୍ରନ୍ଥର ରଚନା ତଥା ପ୍ରକାଶ ପ୍ରାୟ ସର୍ବଦା ସୀମାବଦ୍ଧ । ସେଥିପାଇଁ ବିଭିନ୍ନ ସାଂସ୍କୃତିକ ସଂସ୍ଥା ଓ ସାରସ୍ୱତ ଅନୁଷ୍ଠାନ, ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ ଉତ୍କୃଷ୍ଟ ଗ୍ରନ୍ଥ ରଚନା ପାଇଁ ଲେଖକମାନଙ୍କୁ ଉତ୍ସାହିତ କରିବା ଏବଂ ସେହିଭଳି ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନ କରିବାର କାର୍ଯ୍ୟକ୍ରମ ଗ୍ରହଣ କରି ଥାଆନ୍ତି । 'ଓଡ଼ିଆ ଗବେଷଣା ପରିଷଦ' ମଧ୍ୟ ନିଜର ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟରେ "ପ୍ରକାଶଯୋଗ୍ୟ ନୂତନ/ପୁରାତନ ଓଡ଼ିଆ ଗ୍ରନ୍ଥର ସଂଗ୍ରହ ଓ ମୁଦ୍ରଣ" ଉଦ୍ଦେଶ୍ୟ ସ୍ଥିର କରିଛି ।

'ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା'ର ପ୍ରଥମ ପ୍ରକାଶନ ରୂପେ ଏହି 'ଶ୍ରୀବେଢ଼ା' ଆମେ ଆଜି ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛୁ । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର କବି ବଳରାମ ଦାସ-ବିରଚିତ ଏହି କ୍ଷୁଦ୍ର ଗ୍ରନ୍ଥଟିର ସମ୍ପାଦନା ଓ ପ୍ରକାଶ ଫଳରେ ଏବେ ଆମର ସାଂସ୍କୃତିକ ଗନ୍ତାଘରରେ ଏକ ନୂତନ ସମ୍ପଦ

Digitized by srujanika@gmail.com

ସଂଯୋଜିତ ହେଲା—ରାଜ୍ୟର ସାମାଜିକ ଇତିହାସ ଅଧ୍ୟୟନ ଲାଗି କିଛି ନୂତନ ତଥ୍ୟ ମିଳିଲା । ସାହିତ୍ୟିକ ଓ ଐତିହାସିକ ମୂଲ୍ୟ ଥିବାରୁ ଏ ଗ୍ରନ୍ଥଟି ଆମର ସୁଧୀ ସଜ୍ଜନମଣ୍ଡଳୀରେ ସାଦର ଗୃହୀତ ହେବ ବୋଲି ବିଶ୍ୱାସ ।

ଅଧ୍ୟାପକ ଡକ୍ଟର ମହୀନ୍ଦ୍ର ମହାନ୍ତି ବହୁ ଶ୍ରମ ସ୍ୱୀକାର କରି ଗ୍ରନ୍ଥଟିର ସଂଗ୍ରହ-ସଂପାଦନା ପୂର୍ବକ, ପ୍ରକାଶ ପାଇଁ ଏହା 'ଗବେଷଣା ପରିଷଦ'କୁ ପ୍ରଦାନ କରିଥିବାରୁ ପରିଷଦ ତରଫରୁ ତାଙ୍କ ପ୍ରତି ସାଧୁବାଦ ଜ୍ଞାପନ କରୁଛୁଁ । ଇତି ।

ସାରସ୍ୱତ ନିଳୟ
ଛତିବଜାର, କଟକ-୩
ସେପ୍‌ଟେମ୍ବର ୨୯, ୧୯୮୧

**କ୍ଷେତ୍ରବାସୀ ନାୟକ**
ସଂପାଦକ
ଓଡ଼ିଆ ଗବେଷଣା ପରିଷଦ

Digitized by srujanika@gmail.com

# ମୁଖବନ୍ଧ

## ପାଣ୍ଡୁଲିପି ସଂଗ୍ରହ :

୧୯୭୦ ମସିହାରେ ସମ୍ବଲପୁର ସହରସ୍ଥ ମହାନ୍ତିପଡ଼ାର ଶ୍ରୀ କୈଳାସ ଚନ୍ଦ୍ର ପଟ୍ଟନାୟକଙ୍କ ବାସଗୃହରୁ ମୁଁ କବି ବଳରାମ ଦାସଙ୍କ ରଚିତ 'ଶ୍ରୀଚେଡ଼ା ବା ରୁକ୍ମିଣୀ ବିବାହ ଲେଖନ'ର ଏକ ପ୍ରାଚୀନ ପାଣ୍ଡୁଲିପି ସଂଗ୍ରହ କରିଥିଲି । ଏହା ପୂର୍ବରୁ ବଂଶାନୁକ୍ରମେ ତାଳପତ୍ର ପୋଥିରେ ଲେଖା ଯାଉଥିଲା ଓ ଏବେ ତାହା ପୁରୁଣା ବାଲିକାଗଜରେ ଲେଖା ହୋଇଥିଲା । ଏହି ପାଣ୍ଡୁଲିପି ଉଦ୍ଧାର କାର୍ଯ୍ୟରେ ବହୁକଷ୍ଟ ସ୍ୱୀକାର କରି ମୋତେ ସାହାଯ୍ୟ କରିଥିଲେ ସମ୍ବଲପୁରର ବୟୋବୃଦ୍ଧ କବି ସ୍ୱର୍ଗତ ସତ୍ୟନାରାୟଣ ବହିଦାର (୧୯୧୩—୧୯୮୦) । ପଶ୍ଚିମ ଓଡ଼ିଶାର ଆରଣ୍ୟକ କରଣମାନଙ୍କ ବିବାହ ପଦ୍ଧତିରେ ଏହି ରଚନାର ପଠନ ଏକ କୁଳାଚାର ମଧ୍ୟରେ ଗୃହୀତ ହୋଇଥିବାରୁ ଏହା ଅନ୍ୟ କାହାରିକୁ ଦେବା ତ ଦୂରର କଥା, ଦେଖିବା ପାଇଁ ମଧ୍ୟ ନିଷେଧ ରହିଛି । କୁଳାଚାରର ଅଂଶ ବିଶେଷ ହୋଇଥିବାରୁ ଏହାର ସ୍ୱତନ୍ତ୍ର ମର୍ଯ୍ୟାଦା ବା ମହତ୍ତ୍ୱ ରହିଛି । ତେଣୁ ଜଣେ ବାହାରର ବ୍ୟକ୍ତି ପକ୍ଷରେ ଏହା ସଂଗ୍ରହ କରିବା ପ୍ରକୃତରେ ଦୁରୂହ ବ୍ୟାପାର ।

Digitized by srujanika@gmail.com

ଏହି ପାଣ୍ଡୁଲିପିର ଆଲୋଚନା ପ୍ରଥମେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ଓଡ଼ିଆ ପତ୍ରିକା 'ସପ୍ତର୍ଷି' (୧୯୭୭/ଡିସେମ୍ବର ସଂଖ୍ୟା) ଏବଂ ପରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ମୁଖପତ୍ର 'କୋଣାର୍କ' (୧୯୭୭—୩୪ଶ ସଂଖ୍ୟା)ରେ ଲେଖିଥିଲି । ଏହି ରଚନାଟି ଓଡ଼ିଆ 'ଗବେଷଣା ପରିଷଦ'ର ମୁଖପତ୍ର 'ଏଷଣା'ର ପ୍ରଥମ ଖଣ୍ଡରେ (୧୯୮୦) ପ୍ରକାଶିତ ହୋଇଗଲା ପରେ ଏହା ସଂସ୍କୃତି ସଚେତନ ବ୍ୟକ୍ତିମାନଙ୍କର ସପ୍ରଶଂସ ଦୃଷ୍ଟି ଆକର୍ଷଣ କଲା । ଏଣୁ ଏକ ସ୍ୱତନ୍ତ୍ର ପୁସ୍ତକ ଭାବରେ ଏହାର ପ୍ରକାଶନ ଲୋଡ଼ା ପଡ଼ିଲା ।

## ରଚୟିତା

'ଶ୍ରୀବେଢ଼ା'ର ରଚୟିତା ପ୍ରସଙ୍ଗରେ ବିଚାର କରିବାକୁ ଗଲେ ଏହାର ଶେଷାଂଶରେ ଥିବା ପଦଟି ପାଠକର ଦୃଷ୍ଟି ଆକର୍ଷଣ କରେ ।

'ବରକନ୍ୟା ଏ ଯେ ସୁଖେ ବିନ ନେଲେ ।
ବଳରାମ ଦାସ ଯେ ଗୀତରେ ଭଣିଲେ' । ୧୪୦ ।

ବଳରାମ ଦାସ ଏହାର ରଚୟିତା । କିନ୍ତୁ ଏହି ବଳରାମ ଦାସ, କେଉଁ ବଳରାମ ଦାସ ? ଓଡ଼ିଆ ସାହିତ୍ୟରେ ଦୁଇଜଣ ବଳରାମ ଦାସ ଥିବାର ସୂଚନା ମିଳେ (୧) । ସମ୍ବଲପୁରର କେତେଜଣ ପଣ୍ଡିତ ବିଶ୍ୱାସ କରନ୍ତି ଯେ ଏହାର ରଚୟିତା ହେଉଛନ୍ତି— ପଞ୍ଚସଖା ଯୁଗର ଭକ୍ତକବି ବଳରାମ ଦାସ । ଏହି ବିଶ୍ୱାସର ଯଥାର୍ଥ ବିଚାର କରାଯାଉ ।

---

(୧) ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ଶ୍ରୀ ସୁରେନ୍ଦ୍ର ମହାନ୍ତି, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର—୩ୟ ସଂସ୍କରଣ-୧୯୭୯—ପୃ ୨୪୫ ।

Digitized by srujanika@gmail.com

ପ୍ରଥମତଃ, ପଞ୍ଚସଖା ଯୁଗର କବି ବଳରାମ ଦାସଙ୍କ ଶ୍ରେଷ୍ଠ କୃତି ହେଲା—ଜଗମୋହନ ରାମାୟଣ । ଏହା ଦାଣ୍ଡିବୃତ୍ତରେ ରଚିତ ହୋଇଥିବାରୁ ଏହା 'ଦାଣ୍ଡି ରାମାୟଣ' ନାମରେ ମଧ୍ୟ ସୁପରିଚିତ । ଆଲୋଚ୍ୟ 'ଶ୍ରୀବେଢ଼ା' ମଧ୍ୟ ଦାଣ୍ଡିବୃତ୍ତରେ ରଚିତ । ତେଣୁ, ଏହାକୁ ପଞ୍ଚସଖା କବି ବଳରାମ ଦାସ ରଚନା କରିଥିବା ସମ୍ଭବ ।

ଦ୍ୱିତୀୟତଃ, ଏହି ପଞ୍ଚସଖା କବି ବଳରାମ ଦାସ ସଂସ୍କୃତ ଗୀତା'ର ସରଳ ଅନୁବାଦ କରିଥିବାର ଜଣାଯାଏ । ଏହାର ପ୍ରଥମଗ୍ରନ୍ଥଟିରେ ସୂଚିତ ହୋଇଛି—'ରୁକ୍ମଣୀ ସ୍ୱୟମ୍ବର ବାଣୀ' (୨) । ଏଥିରୁ ଜଣାଯାଏ, ପୂର୍ବରୁ 'ରୁକ୍ମଣୀ ସ୍ୱୟମ୍ବର' ବିଷୟଟି ବେଶ୍ ପ୍ରସିଦ୍ଧି ଲାଭ କରିଛି । ଏହି 'ରୁକ୍ମଣୀ ସ୍ୱୟମ୍ବର' ଏବଂ ଆଲୋଚ୍ୟ 'ରୁକ୍ମଣୀ ବିବାହ ଲେଖନ' ଅଭିନ୍ନ ବୋଲି ମନେହୁଏ ।

ତୃତୀୟତଃ, ଭାଷା ଦିଗରୁ ବିଚାର କଲେ ପଞ୍ଚସଖା ଯୁଗର କବି ବଳରାମ ଦାସଙ୍କ ରଚନାର କେତୋଟି ବିଶିଷ୍ଟ ଶବ୍ଦ ତଥା ପ୍ରୟୋଗ 'ଶ୍ରୀବେଢ଼ା'ରେ ବହୁସ୍ଥଳରେ ପରିଲକ୍ଷିତ ହୁଏ । ଏହାର କେତୋଟି ଦୃଷ୍ଟାନ୍ତ ଦିଆଯାଉଛି । ପଞ୍ଚସଖା ଯୁଗୀୟ କବି ବଳରାମଦାସଙ୍କ ରଚନାରେ କେତେକ କ୍ରିୟା ପଦ ଶେଷରେ 'ସି' ଅକ୍ଷର ପ୍ରୟୋଗ ପରିଲକ୍ଷିତ ହୁଏ । ଯଥା—'କରସି', 'ନୁହସି' ।

---

(୨) ଓଡ଼ିଆ ସାହିତ୍ୟର ଇତିହାସ—( ୩ୟ ଭାଗ )—ଡକ୍ଟର ବଂଶୀଧର ମହାନ୍ତ—ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨—୧୯୭୭—ପୃ : ୧୯୪ ।

Digitized by srujanika@gmail.com

॥ ୱର ॥

ଦାଣ୍ଡିରାମାୟଣ—"ପୃଥୀର ଭିତରୁ ହାଦେ ଶୁଭିଲା ବଚନ
ମୋତେ ତୁ ରକ୍ଷା କରସି ରଘୁନାଦନ"।

ଶ୍ରୀବେଡ଼ା—"ତୁ ଦେଖ ଅନୁଗ୍ରହ କରସି ହେ ଗୋ ମୋତେ
ରୁକ୍ମଣୀ କଳସା ଯେ ସ୍ମରୁ ମୋର ଚିତ୍ତେ । ୧ ।

× ×

କ କ ଶୁଭକାଙ୍କ୍ଷୀ କହସି ଗୋସାଇଁ
ଶୁଣିଲେ ଚିତ୍ତ ମୋର ଆନନ୍ଦ ମନ ହୋଇ ।୫୧।

× ×

କଳିଙ୍ଗ ଦେଶର ଯେ ଅଟଇ ରାଜହଂସ
ରୁକ୍ମଣୀର ବାର୍ତ୍ତା ଯେ ଶୁଣସି ହଂସେଶ । ୯ ।

× ×

ରୁକ୍ମଣୀ ବୋଇଲେ ବିପ୍ର ଚଳ ଆପଣା ମନ୍ଦିର
ମୋତେ ହୋ କାରଣ ତୁ କଲୁସି ଦ୍ୱିଜବର" ।୫୪

ଦାଣ୍ଡିରାମାୟଣ—"ସେ କଥା ନକହ ହୋଇଲା ଏବେ ଆସି
ମୂର୍ଖମତି ପଣେ ତୁ ବମନ କୁହସି"।

ଶ୍ରୀବେଡ଼ା—"ତାହା ଶୁଣି ସଖୀ ଯେ ବୋଲଇ ଉତ୍ତର
ଚିତ୍ତରେ ଭଲ ମା ଗୋ କୁହସି କାତର" । ୨୪ ।

ଠିକ୍ ସେହିପରି କ୍ରିୟାପଦ ଶେଷରେ 'କ' ଅକ୍ଷରର ମଧ୍ୟ ପ୍ରୟୋଗ ଉଭୟ ଦାଣ୍ଡିରାମାୟଣ ଓ ଶ୍ରୀବେଢ଼ାରେ ସ୍ଥାନ ପାଇଛି ।

ଦାଣ୍ଡିରାମାୟଣ—"ଅବହେଳେ ଧନୁଯେ କଲାକ ଆୟତ୍ତ
ନଷ୍ଟଯେ ସୀତା ଯେହାକୁ ହୋଇଲା ପରାପତ"।

Digitized by srujanika@gmail.com

ଶ୍ରୀବେଢ଼ା—"ଅମ୍ବଙ୍କ ସାର କନ୍ୟା ପଡ଼ିଲାକ ହାକ
ଜାଗଣ୍ଡେ ଆଜ୍ଞା ଦେଲାକ ସୈନ୍ୟସାକ"।

ଦାଣ୍ଡି ରାମାୟଣ—"ମଧ୍ୟରୁ ଝଙ୍କଲା ଯେ ବେକ ଖଣ୍ଡ ହୋଇ
ଦେଖି ରଜାମାନେ ଯେ ଗଲେକ ପଳାଇ"।

ଶ୍ରୀବେଢ଼ା—"ବ୍ରାହ୍ମଣର ବଚନ ରୁକ୍ମଣୀ ଦେବୀ ଦେଖି
ଲୋତକ ଜାତ ପୂର୍ଣ୍ଣ କଲେକ ବେନ ଆଖି"।୪୫।

ଶାରଳା ମହାଭାରତ ତଥା ଦାଣ୍ଡି ରାମାୟଣରେ ବ୍ୟବହୃତ ବିଭିନ୍ନ ପ୍ରାଚୀନ ଶବ୍ଦ 'ଶ୍ରୀବେଢ଼ା' ରେ ମଧ୍ୟ ଦୃଷ୍ଟିଗୋଚର ହୁଏ; ଯଥା—ଶିରବନ୍ଧୁ।

ଶାରଳା ମହାଭାରତ—"ତତ୍କ୍ଷଣ ଗଲେ ଯେ ଦେବ ଶିରବନ୍ଧୁ
ନଶି ଅର୍ଦ୍ଧମାନେ ଯେ ଭେଟିଲେ ସବ୍ୟସାଚି"।

ଶ୍ରୀବେଢ଼ା—"ମୂର୍ଚ୍ଛିଟି ନ ଗଲେ ଦେବ ନୋହିବ ନା କିଛୁ
ସଜହୋଇଲେ ବେଗେ ଦେବ ଶିରବନ୍ଧୁ"।

ସେହିପରି 'ଶୁଭିଲେ', 'ଦ୍ରୁଶନ', 'ଗଡ଼ମାଳ', 'ତଲ୍‌କତି', 'ନଠୀକାଳ', 'ଆଶିଷ୍ୟ', 'ଦେହି' (ଦେହ), ପ୍ରଭୃତି ବହୁ ପ୍ରାଚୀନ ପ୍ରୟୋଗ 'ଶ୍ରୀବେଢ଼ା'ରେ ପରିଲକ୍ଷିତ ହୁଏ। ଏହି ସବୁ ଦୃଷ୍ଟିକୋଣରୁ ବିଚାର କଲେ, ଶ୍ରୀବେଢ଼ା ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସଙ୍କ ଦ୍ୱାରା ରଚିତ ବୋଲି ଜଣାପଡ଼େ।

## 'ଶ୍ରୀବେଢ଼ା' ନାମକରଣ

ଏହି କାବ୍ୟଟିର ନାମ 'ଶ୍ରୀବେଢ଼ା' ବା 'ରୁକ୍ମଣୀ (ରୁକ୍ମିଣୀ) ବିବାହ ଲେଖନ'। ଶ୍ରୀକୃଷ୍ଣଙ୍କର ଅଷ୍ଟପାଟବଂଶୀ ମଧ୍ୟରେ ଯେଉଁ ରୁକ୍ମଣୀ, ତାଙ୍କର ଅପହରଣ ଓ ଶ୍ରୀକୃଷ୍ଣଙ୍କ ସହିତ ବିବାହ ଏହାର

Digitized by srujanika@gmail.com

ବିଷୟବସ୍ତୁ । ରୁକ୍ମଣୀଙ୍କ ବିବାହ ବିଷୟକୁ କେନ୍ଦ୍ରକରି ଏହି 'ଶ୍ରୀବେଢ଼ା' ନାମକରଣ କରିବାର ତାତ୍ପର୍ଯ୍ୟ କଅଣ ? ଅନୁମାନ କରାଯାଏ—'ରୂଢ଼ି' ଶବ୍ଦରୁ ଏହାର ସୃଷ୍ଟି ହୋଇଛି । 'ରୂଢ଼ି' ଶବ୍ଦର ଅର୍ଥ ପ୍ରସିଦ୍ଧ । ବୋଧହୁଏ ପୂର୍ବେ ଏହି ଅଞ୍ଚଳରେ ରୁକ୍ମଣୀ ବିବାହ ଉପାଖ୍ୟାନ ସମ୍ବଳିତ ଗୀତ ପ୍ରସିଦ୍ଧିଲାଭ କରିଥିଲା । ପଶ୍ଚିମ ଓଡ଼ିଶାରେ ବିବାହ ପୂର୍ବଦିନ ମଙ୍ଗଳକୃତ୍ୟ ବା ଚତୁର୍ଥୀଦିନ ଆରଣ୍ୟକ କରଣମାନେ ଏହାକୁ ବୋଲିଥାଆନ୍ତି । ଏହା ବିବାହ ପଦ୍ଧତିର ଏକ ଅଂଶ ବିଶେଷ । ତେଣୁ ଏହାର ପ୍ରସିଦ୍ଧି । ଏହି ଅଞ୍ଚଳରେ ଅଧିକ ପ୍ରସିଦ୍ଧିଲାଭ କରିଥିବାରୁ 'ରୂଢ଼ି' ଶବ୍ଦଟି କ୍ରମେ 'ବେଢ଼ା' ନାମରେ ପରିଣତ ହୋଇଛି । ଯେ କୌଣସି ଦେବତା ବା ପବିତ୍ର ନାମର ପ୍ରାରମ୍ଭରେ 'ଶ୍ରୀ' ସଂଯୋଗ କରାଯାଇଥାଏ । ତେଣୁ ଏହାର ଆରମ୍ଭରେ 'ଶ୍ରୀ' ସଂଯୁକ୍ତ ହୋଇ 'ଶ୍ରୀବେଢ଼ା' ରେ ପରିଣତ ହୋଇଛି ।

'କଳସା' ପରି 'ଶ୍ରୀବେଢ଼ା' କୁ 'ମଙ୍ଗଳ ଗୀତ' ଭାବରେ ଗ୍ରହଣ କରାଯାଇପାରେ । ମଙ୍ଗଳ ଗୀତ ଭାବରେ ବାସ୍ତବିକ ଏହା ପ୍ରସିଦ୍ଧି ଅର୍ଜନ କରିଥିଲା; ତେଣୁ ପରବର୍ତ୍ତୀ କାଳରେ କବିମାନେ 'ବେଢ଼ାବାଣୀ'ରେ ଛାନ୍ଦ ରଚନା କରିଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ—କବି ଉପେନ୍ଦ୍ର ଭଞ୍ଜ ଆପଣା 'ବୈଦେହୀଶ ବିଳାସ' କାବ୍ୟର ଷଷ୍ଠଛାନ୍ଦକୁ ମାଳବ ରାଗ—ବେଢ଼ା ବାଣୀରେ ଗାଇବା ଲାଗି ନିର୍ଦ୍ଦେଶ କରିଛନ୍ତି ।

## ବିବାହ ଉପଚାର

ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗିର, ସୋନପୁର, ରାୟଗଡ଼ା, ବାମଣ୍ଡା, କଳାହାଣ୍ଡି ଓ ବୌଦ୍ଧ ଆଦି ଅଞ୍ଚଳରେ

Digitized by srujanika@gmail.com

ଆରଣ୍ୟକ କରଣଙ୍କର ବିବାହ ଉତ୍ସବରେ ଏହି 'ଶ୍ରୀଗେଡ଼ା' ବା 'ରୁକ୍ମଣୀ ବିବାହ ଲେଖନ' ଏକ ପଦ୍ଧତି ବା ଉପଚାର ମଧ୍ୟରେ ଗ୍ରହଣୀୟ । ଏହା ବଂଶାନୁକ୍ରମେ କେଉଁ ଯୁଗରୁ ଏ ପର୍ଯ୍ୟନ୍ତ ଚଳି ଆସୁଛି, ତାହା ଏବେ କୁହାଯାଇ ପାରିବ ନାହିଁ । ଏହା ଏକ ବିଧିବଦ୍ଧ ପଦ୍ଧତି ।

ଏହି ଅଞ୍ଚଳରେ କରଣମାନଙ୍କୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଏ । ଯଥା—'ଉତ୍କଳୀୟ' ଓ 'ଆରଣ୍ୟକ' । ଯେଉଁ କରଣମାନେ ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରୁ ଆସି ଏହି ଅଞ୍ଚଳରେ ବସବାସ କରିଛନ୍ତି, ସେମାନଙ୍କୁ 'ଉତ୍କଳୀୟ କରଣ' ଏବଂ ଯେଉଁ କରଣମାନେ ଏହି ଅଞ୍ଚଳରେ ମୂଳରୁ ରହିଛନ୍ତି, ସେମାନେ 'ଆରଣ୍ୟକ କରଣ' ନାମରେ ପରିଚିତ । ଏହି 'ଉତ୍କଳୀୟ କରଣମାନେ' ବିବାହ ଉତ୍ସବରେ 'ରାମବିଭା' ଗାନ କରିଥାଆନ୍ତି ଏବଂ 'ଆରଣ୍ୟକ କରଣମାନେ' 'ରୁକ୍ମଣୀ ବିଭା' ବା ରୁକ୍ମଣୀ ବିବାହ ଲେଖନ' (ଶ୍ରୀଗେଡ଼ା) ପାଠ କରିଥା'ନ୍ତି । ଏହି ଶେଷୋକ୍ତ ରଚନାଟି ଏପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ପୂର୍ବେ ତାଳପତ୍ର ପୋଥିରେ ଏହା ଲେଖା ହୋଇଥିଲା ଏବଂ କାଗଜରେ ଲେଖି ଆରଣ୍ୟକ କରଣମାନେ ଏହାକୁ ଘରେ ଘରେ ସାଇତି ରଖିଛନ୍ତି ।

କନ୍ୟାଘରେ 'ଗଣସନ୍' (ମଙ୍ଗଳକୃତ୍ୟ) ବିନବେଦୀ ଉପରେ ବସି ଏହି କାବ୍ୟଟି ପାଠ କରାଯାଏ । ସାଧାରଣତଃ ସ୍ତ୍ରୀମାନଙ୍କ ଗହଣରେ କୌଣସି ବୟସ୍କା ସଧବା ସ୍ତ୍ରୀ ଏହା ପାଠ କରିଥାଏ । ଏହାକୁ ପାଠକରିବା ପାଇଁ ବ୍ରାହ୍ମଣର ଆବଶ୍ୟକତା ପଡ଼େ ନାହିଁ । ବେଦୀର ପାହାଚ ଉପରେ କନ୍ୟାର ମାଆ ଗୋଟିଏ ପାଦ

Digitized by srujanika@gmail.com

ଘୋଡ଼ାଇଥାନ୍ତି; ବେଦୀ ଉପରେ ସାତକୁମ୍ଭୀ ଜଳ ସିଞ୍ଚନ କରାଯାଏ । ଏହି ସାତକୁମ୍ଭୀ ହେଲେ ସାତଜଣ ବିବାହିତ ପୁରୁଷ । ମାଆ ଏବଂ କନ୍ୟା ମଝିରେ ଏକ ପର୍ଦ୍ଦା ଦିଆଯାଏ ଏବଂ 'ଶ୍ରୀବେଢ଼ା' ପାଠ ଆରମ୍ଭ ହୁଏ । 'ଶ୍ରୀବେଢ଼ା' ପାଠକଲା ପରେ ସଧବା ସ୍ତ୍ରୀମାନେ ଅମୃତ ଭାତ ଓ ଖିରି ଅଡ଼େଇ ଗୁଣ୍ଡା କନ୍ୟାକୁ ଖୁଆଇ ଦିଅନ୍ତି ।

ବରଘରେ କିନ୍ତୁ ଚତୁର୍ଥୀଦିନ ଏହି 'ଶ୍ରୀବେଢ଼ା' ପାଠ କରାଯାଏ । ସକାଳେ ପଞ୍ଚମୁଖୀ ଓ ନାନ୍ଦମୁଖୀ ଶ୍ରାଦ୍ଧ ପରେ ଜଣେ ବୟସ୍କ ବ୍ୟକ୍ତି ଏହାକୁ ପାଠ କରିବାର ବିଧି ରହିଛି ।

ଏହି ପରିପ୍ରେକ୍ଷୀରେ ବିଚାର କଲେ—'ଶ୍ରୀବେଢା' ଏହି ଅଞ୍ଚଳରେ କେବଳ ଏକ ପୌରାଣିକ ଆଖ୍ୟାନ ନୁହେଁ, ସାହିତ୍ୟର ଅଂଶ ବିଶେଷ ନୁହେଁ, ଅଧିକନ୍ତୁ, ଏହା ଜୀବନ ଯାପନ ପ୍ରଣାଳୀ, ସାମାଜିକ ପରମ୍ପରା, ସାଂସ୍କୃତିକ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ।

## ରୁକ୍ମିଣୀ କଳସା

ଆଲୋଚ୍ୟ 'ଶ୍ରୀବେଢ଼ା' ବା ରୁକ୍ମିଣୀ ବିବାହ ଲେଖନ'ର ଅନ୍ୟନାମ ହେଲା—'ରୁକ୍ମିଣୀ କଳସା' । ରଚୟିତା ବଳରାମ ଦାସ ପଦ ମଧ୍ୟରେ ସରସ୍ୱତୀଙ୍କୁ ସ୍ତୁତିକରି ସପ୍ତମ ପଦରେ ଲେଖିଛନ୍ତି—

"ତୁ ଦେବୀ ଅନୁଗ୍ରହ କରସି ଗୋ ମୋତେ ।
ରୁକ୍ମିଣୀ କଳସା ଯେ ସ୍ଫୁରୁ ମୋର ଚିତେ ॥"

ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା, ବଚ୍ଛାଦାସଙ୍କ 'କଳସା ଚଉତିଶା'ର କାଳ ନିରୂପଣ ପ୍ରସଙ୍ଗରେ 'କଳସା'ର ଅର୍ଥ 'ମଙ୍ଗଳ ସ୍ତୋତ୍ର' ବା 'ମାଙ୍ଗଳିକ ସୂକ୍ତି' ବୋଲି କହିଥିଲେ । ସେ ଦୃଷ୍ଟିରୁ

Digitized by srujanika@gmail.com

ବସ୍ତୁର କଲେ 'ଶ୍ରୀବେଢ଼ା'କୁ 'କଳସା' କହିବାରେ କୌଣସି ଆପତ୍ତି ନାହିଁ । କାରଣ ଏଥିରେ ଭଗବାନ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ବିବାହପର୍ବ ବର୍ଣ୍ଣନା କରାଯାଇଛି ଏବଂ ସେମାନେ ବର ଓ କନ୍ୟାଙ୍କୁ ଆଶୀର୍ବାଦ କରି ସର୍ବମଙ୍ଗଳ କରନ୍ତୁ ବୋଲି କୁହାଯାଇଛି—

"ବର କନ୍ୟାଙ୍କର ଯେ ଶୁଭଦିନ ଯାଉ
ଲକ୍ଷ୍ମୀ ନାରାୟଣଙ୍କର ଯେ ପରମ ଆୟୁ ପାଉ" ।

କେବଳ ସେତିକି ନୁହେଁ, କବି ପାଠିକା ବା ଗୁରୁଜନ ସଧବା ସ୍ତ୍ରୀଲୋକମାନେ ମଧ୍ୟ ବର-କନ୍ୟା ପ୍ରତି ମଙ୍ଗଳ କାମନା କରିଛନ୍ତି—

"ମୁଖ ପୂରେଇ ଗୁଆ ତାମ୍ବୁଳ ଖାଉଛନ୍ତି
ବର କନ୍ୟାଙ୍କୁ ଯେ ଆଶିଷ ଦେଉଛନ୍ତି" ।

ଅତଏବ୍ ପ୍ରୋକ୍ତ 'ଶ୍ରୀବେଢ଼ା' ରଚନାକୁ 'କଳସା' ବୋଲିବାରେ କୌଣସି ଆପତ୍ତି ନାହିଁ ।

## ମଙ୍ଗଳାଚରଣ

'ଶ୍ରୀବେଢ଼ା' ର ପଦ ସଂଖ୍ୟା—ଏକଶହ ଏକଚାଳିଶ । ଏହାର ପ୍ରଥମାଂଶରେ ଯଥାକ୍ରମେ ବିଘ୍ନନାଶକ ଶ୍ରୀଗଣେଶ, ହରିହର ଓ ସରସ୍ୱତୀଙ୍କୁ ବନ୍ଦନା କରାଯାଇଛି । ଶ୍ରୀଗଣେଶଙ୍କୁ କବି ବଳରାମ ଦାସ ତିନି ପଦରେ ବନ୍ଦନା କରିଛନ୍ତି—

"ବନ୍ଦଇଁ ଗଣେଶଙ୍କ ଯେ ଗଜମୁଖର ବାଳ
ଶିରରେ ସିନ୍ଦୂର ଶୋଭା କପୋଳେ ଯାହାର ।
ଅମୃତ ଲଡ଼ୁ ଯେ କରଇ ଆହାର
ପଦ୍ମରେ ପୂଜା ମୁଁ ଯେ କରଇ ତାହାର ।

Digitized by srujanika@gmail.com

ସପତ ସିନ୍ଧୁ ତୋଳ ଧରଇ କରସ୍ଥଳ
ଜୟ ତୁ ଗଜ ମୁଖ ପେଟ ତୋ ଥୋଥଳ'' ॥

ଦ୍ୱିତୀୟରେ ହରି ଓ ହରଙ୍କୁ କବି ଦୁଇଟି ପଦରେ ବନ୍ଦନା କରିଛନ୍ତି—

'ଜୟ ତୁ ହରି-ହର ହେ ତ୍ରିଦଶ ମୋହନ
ବୃଷଭ ବାହାନ ଯେ ଗରୁଡ଼ ଆସନ ॥
ଶଙ୍ଖ, ଚକ୍ର ଶୋଭେ ଯାର ହସ୍ତ
ବିରଜଇ ଡମ୍ବରୁ ତ୍ରିଶୂଳ ତିନନେତ୍ର' ॥

ତୃତୀୟରେ ସେ ସରସ୍ୱତୀଙ୍କୁ ବନ୍ଦନା କରି ଲେଖିଛନ୍ତି—

'ବନ୍ଦଇଁ ସରସ୍ୱତୀ ଗୋ ବ୍ରହ୍ମାର ଦୋହିତୀ
ସୁସ୍ୱର କଣ୍ଠେ ମା ଗୋ ମୋହିଲୁ ଶିଖିପତି ॥
ତୁ ଦେବୀ ଅନୁଗ୍ରହ କରସି ଗୋ ମୋତେ
ରୁକ୍ମିଣୀ କଳସା ଯେ ସ୍ଫୁରୁ ମୋର ଚିତ୍ତେ ॥
କାଶୀନଗରପୁରେ ଯେ ଜନମ ତୋର ସ୍ଥିତି
ଦେସି ପୁରଣ ମା ଗୋ କରଇ ଭକତି' ॥

ଅର୍ଥାତ୍ ସର୍ବମୋଟ ପ୍ରଥମ ଆଠପଦ 'ଶ୍ରୀବେଢ଼ା'ର ନମସ୍କ୍ରିୟା ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇପାରେ । ନବମ ପଦଠାରୁ 'ରୁକ୍ମିଣୀ ବିବାହ' ର ବିଷୟବସ୍ତୁ ଆରମ୍ଭ ହୋଇଛି ।

## କଥାବସ୍ତୁ

ଭକ୍ତକବି ଜଗନ୍ନାଥ ଦାସଙ୍କ 'ଭାଗବତ' ଏବଂ ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ' (ସପ୍ତଖଣ୍ଡ ହରିବଂଶ) ର ରୁକ୍ମିଣୀ ବିବାହ ପ୍ରସଙ୍ଗ ଏବଂ 'ଶ୍ରୀବେଢ଼ା' ର କଥାବସ୍ତୁ ।

Digitized by srujanika@gmail.com

## ॥ ଏଗାର ॥

ମୂଳତଃ ଶ୍ରୀଗୁଣ୍ଡିଚାର କଥାବସ୍ତୁ ହେଲା—କଳିଙ୍ଗ ଦେଶର ରାଜବଂଶରେ ରାଜକୁମାରୀ ରୁକ୍ମିଣୀଙ୍କର ଜନ୍ମ । ରୂପ ଯୌବନରେ ସେ ମଦନଙ୍କ ଅରି ସଦୃଶ । ରାଜକୁମାରୀ ରୁକ୍ମିଣୀଙ୍କ ସହିତ ଚେଦୀ ଦେଶର ରାଜା ଦମଘୋଷଙ୍କ ପୁତ୍ର ଶିଶୁପାଳଙ୍କର ବିବାହ ପାଇଁ ପିତା ଭୀଷ୍ମକ ଓ ଭ୍ରାତା ରୁକ୍ମଣ ସ୍ଥିରକଲେ । ମାତ୍ର ଏଥିରେ ରୁକ୍ମିଣୀ ଅସମ୍ମତା ହେଲେ । ମା'ଙ୍କ ସମ୍ମୁଖରେ କାନ୍ଦି କାନ୍ଦି ଅତି ବିକଳ ହୋଇ ସେ ଏହାର ପ୍ରତିବାଦ କରି କହିଲେ—ଯଦି ଦମଘୋଷ ପୁତ୍ରଙ୍କ ସହିତ ମୋର ବିବାହ କରିଦିଆଯାଏ, ତେବେ କେଉଁଆଡ଼େ ପଳାଇବି, ନଚେତ୍ ଅଗ୍ନିରେ ଝାସଦେଇ ମରିବି । ଏକଥା ଶୁଣି ତାଙ୍କ ମାତା ସାନ୍ତ୍ୱନା ଦେଇ କହିଲେ ତୋର ମନସ୍କାମନା ପୂର୍ଣ୍ଣହେବ—

"ତାହା ଶୁଣି ମାୟେ ଯେ ବୋଇଲେ ଉତ୍ତର ।
ମନୋବାଞ୍ଛା ସିଦ୍ଧଗୋ ହେଉଛି ତୋହର ।

ରୁକ୍ମିଣୀ ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କୁ ପତି ରୂପେ ଗ୍ରହଣ କରିବାକୁ ମାତାଙ୍କ ସମ୍ମୁଖରେ ଇଚ୍ଛା ପ୍ରକାଶ କରିଛନ୍ତି—

"ରୁକ୍ମିଣୀ ବୋଇଲେ ମୋର ଅନ୍ୟରେ କାର୍ଯ୍ୟ ନାହିଁ ।
ଦ୍ୱାରକା ପତି କୃଷ୍ଣଙ୍କୁ ଗୋ ବରିଆସ ଯାଇ ।"

ସେ ନିଜର ବେଦନା ସଖୀମାନଙ୍କୁ ଜଣାଇଲେ । ସଖୀମାନେ 'ଚିତ୍ତରେ ଭାଳ ମାଗୋ ନୁହଇ କାତର' କହି ପ୍ରବୋଧନା ଦେଲେ । ସଖୀମାନେ ଏକ ପ୍ରସ୍ତାବ ଦେଇ କହିଲେ ଯେ ଶ୍ରୀକୃଷ୍ଣଙ୍କ ନିକଟକୁ ଏକ ଦୂତ ପଠାଇବା ଆବଶ୍ୟକ । ତେଣୁ ରୁକ୍ମିଣୀ ଏକ ବୃଦ୍ଧ ବ୍ରାହ୍ମଣଙ୍କୁ ଶୀଘ୍ର ଡାକିବାକୁ କହିଲେ । ସଖୀମାନେ ଜଣେ ବୃଦ୍ଧ ବ୍ରାହ୍ମଣଙ୍କୁ ଡାକି ଆଣିଲେ । ରୁକ୍ମିଣୀ ବ୍ରାହ୍ମଣଙ୍କୁ କହିଲେ –

Digitized by srujanika@gmail.com

## ॥ ବାର ॥

'ଏ ମୋହର ବଚନ ଶୁଣ ହେ। ଦ୍ୱିଜବର ।
ଲେଖା ନେବୁ ମୋର ଯେ ଦ୍ୱାରକା ନଗର ।'

ରୁକ୍ମଣୀଙ୍କ ଲେଖା ନେଇ ବ୍ରାହ୍ମଣ ଦ୍ୱାରକାପୁରରେ ପ୍ରବେଶ କଲେ । ବ୍ରାହ୍ମଣ ପହଞ୍ଚିଲା ଉତ୍ତାରେ ଶ୍ରୀକୃଷ୍ଣ ତାଙ୍କର ସତ୍କାର କରି ଆଗମନର ଅଭିପ୍ରାୟ ପ୍ରଶ୍ନ କଲେ । ବିପ୍ର ରୁକ୍ମଣୀଙ୍କ ପରିଚୟ ଦେଇ ସମସ୍ତ ବୃତ୍ତାନ୍ତ ପ୍ରକାଶ କଲେ । ବ୍ରାହ୍ମଣଙ୍କ ବାଣୀ ଶୁଣି ଏବଂ ରୁକ୍ମଣୀଙ୍କ ଲେଖାପାଠ କରି ଶ୍ରୀକୃଷ୍ଣ ଦୃଢ଼ ପ୍ରତିଶ୍ରୁତି ଦେଇ କହିଲେ—

ବଳେ ଆମ୍ଭେ ତାହାଙ୍କୁ ହରି ଯେ ଆଣିବୁଁ,
ଏ ମୋହର ସତ୍ୟ ବିପ୍ର ବେଗେ ତୁ କହିବୁ ।'

ଏହା ଶୁଣି ବୃଦ୍ଧ ବ୍ରାହ୍ମଣ ଆନନ୍ଦ-ଚିତ୍ତରେ ପ୍ରତ୍ୟାବର୍ତ୍ତନ କଲେ । ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ସେ ମୁକ୍ତିଲାଭ କରିଛନ୍ତି ବୋଲି ଅନୁଭବ କଲେ ।

ବ୍ରାହ୍ମଣଙ୍କ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଦେଖି ରୁକ୍ମଣୀ କାତର ହୋଇ ପଡ଼ିଲେ । ମନ ଦୁଃଖରେ ଚିନ୍ତାକରି ସେ କାନ୍ଦୁଥିଲାବେଳେ ତାଙ୍କର ବାମଚକ୍ଷୁ ସ୍ଫୁରିଲା । ଏହା ଶୁଭ ସଙ୍କେତ ବୋଲି ସେ ଭାବିଲେ । ବ୍ରାହ୍ମଣ ଆସି ରୁକ୍ମଣୀଙ୍କୁ ସମସ୍ତ କଥା ଜଣାଇଲେ ଓ ସମସ୍ତେ ଆନନ୍ଦିତ ହେଲେ । ବ୍ରାହ୍ମଣ କହିଲେ—

'ନେଇ ବୋଲଣ ମା ଗୋ ବୋଇଲେକ ତୋତେ ।
କିଛି ହିଁ ଆନ ମା ଗୋ ନ ଭାବିବୁ ଚିତ୍ତେ ॥
ଆସୁଛନ୍ତି ମୋତେ ଯେ ପେଶିଲେକ ଆଗ ।
ଭଲ ଲଗ୍ନ ଜାଣି ମା ଗୋ ନେବେ ତୋତେ ବେଗ ॥'

Digitized by srujanika@gmail.com

॥ ତେର ॥

ରୁକ୍ମଣୀଙ୍କ ଠାରୁ କୌଣସି ପାରଶ୍ରମିକ ନ ପାଇ ବ୍ରାହ୍ମଣ ଫେରିଲେ ରୁକ୍ମଣୀ କୁବେରଙ୍କୁ ଡାକ ବ୍ରାହ୍ମଣଙ୍କ ଦୁଃଖ ହରଣ କରିବାକୁ କହିଲେ । ତେଣୁ ବିଶ୍ୱକର୍ମା ବ୍ରାହ୍ମଣଙ୍କ ପ୍ରାସାଦ ନିର୍ମାଣ କରିଦେଲେ । ବ୍ରାହ୍ମଣ ବିରସ ମନରେ ଫେରି ନିଜ ସ୍ଥାନରେ ପହଞ୍ଚିଲାରୁ ପ୍ରାସାଦ ମଧ୍ୟରୁ ଦାସୀମାନେ ଆସି ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ଭିତରେ ବ୍ରାହ୍ମଣୀଙ୍କ ପାଖକୁ ନେଇଗଲେ । ତା'ପରେ ବ୍ରାହ୍ମଣ ଜାଣିଲେ ଯେ ଏ ସମସ୍ତ ରୁକ୍ମଣୀଙ୍କ ଦାନ ।

ରୁକ୍ମଣୀଙ୍କୁ ଆଣିବାପାଇଁ ଶ୍ରୀକୃଷ୍ଣଙ୍କ ଇଚ୍ଛା ଜାଣି ବଳରାମ କହିଲେ—ଅନ୍ୟ ରାଜ୍ୟରେ ଅନେକ କନ୍ୟା ମିଳିବେ ବିବାହ ପାଇଁ ମାତ୍ର ସେ ରାଜ୍ୟକୁ କନ୍ୟା ପାଇଁ ତମେ ଯାଅନା; କାରଣ ଜରାସନ୍ଧ (ଯାରାଷଣ୍ଢ) ବଡ଼ ଦୁଷ୍ଟ ପ୍ରକୃତିର ଲୋକ ।

'ବହୁତ ରାଜ୍ୟରେ ଯେ ଅଛଇ ନନ୍ଦନୀ ।
କାହିଁ ବିଭା ତୋତେ ଯେ କରାଇବା ପୁଣି ॥
ହେ ହରି ମନେ ଭୁଲି ନ ବିଚାର ଆନ ।
ଯାରାଷଣ୍ଢ ଦୁଷ୍ଟ ଯେ ନୁହଇଟି ସାନ ॥'

ମାତ୍ର ଶ୍ରୀକୃଷ୍ଣ ଦୃଢ଼ ପ୍ରତିଜ୍ଞ ଯେ—ସେ ରୁକ୍ମଣୀଙ୍କୁ ଏପରି ବିପଦରୁ ଉଦ୍ଧାର କରିବେ—

'ହରି ବୋଇଲେ ଦେବ ନିଷ୍ଠୟେ ଯିବି ମୁହିଁ ।
ଭକତ କାରଣେ ଜାତ ହୋଇଛି ମୋର ଦେହି ॥
ସର୍ବଦା କାଳରେ ସେ ରମଣୀ ମୋହର ।
ପଦ୍ମନ ଜାତ ହେବେ ଗର୍ଭରେ ତାହାଙ୍କର ॥'

ତାପରେ ଶ୍ରୀକୃଷ୍ଣ ସାରଥିଙ୍କୁ ରଥ ସଜାଇବା ପାଇଁ ଆଜ୍ଞା ଦେଲେ । ଯାହାପାଇଁ ପ୍ରସ୍ତୁତ ରହିଲା ।

Digitized by srujanika@gmail.com

କୁଣ୍ଡୀ ନଗରରେ ଏମାନେ ପ୍ରବେଶ କଲେ ଏବଂ ରାଜା ଧୃଷ୍ଟକ ଏହି ବାର୍ତ୍ତା ପାଇ ନିଜେ ଆସି ସେମାନଙ୍କୁ ସସମ୍ମାନେ ସ୍ୱାଗତ ଜଣାଇ ନଗରରେ ବାସ କରିବା ପାଇଁ ସୁବନ୍ଦୋବସ୍ତ କରି ଦେଲେ ।

ଦାସୀ ପରିବେଷ୍ଟିତ ରୁକ୍ମିଣୀ ବିବାହ ତିଥିର ସକାଳେ ବସନ ଭୂଷଣ ଆଦି ପରିଧାନ ପୂର୍ବକ ରତ୍ନ ଦାନ୍ଦୋଳାରେ ଉପବେଶନ କରି ଦେବୀ ମନ୍ଦିରକୁ ଗମନ କଲେ । ରୁକ୍ମିଣୀ, ଦେବୀ ମାତାଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ ସ୍ତୁତିକଲେ—'ନନ୍ଦର ନନ୍ଦନ ମା ଗୋ, ଦେବୁ ମୋତେ ପତି ।' ଏହାକହି ରୁକ୍ମିଣୀ ହାତରେ ବିଷ ଧରି ପାନ କରିବାକୁ ବସିଲା ବେଳେ ଦେବୀ ସ୍ୱଶରୀରରେ ଆବିର୍ଭୂତା ହୋଇ ତାଙ୍କୁ ଏପରି କାର୍ଯ୍ୟରୁ ନିବର୍ତ୍ତାଇଲେ—

'ନ କର ଚିନ୍ତା ମାଗୋ ଅଇଲେ ଦେବ ହରି ।
ଦେଉଳ ଦୁଆରୁ ମାଗୋ ନେବେ କର ଧରି ॥
ଏବେ ଯାଅ ମାଗୋ ନାରାୟଣଙ୍କର ପାଶ ।
ଏତେ ବୋଲି ଦେବୀ ଯେ ରହିଲେ ନିଜ ବାସ ॥

ରୁକ୍ମିଣୀ, ଦେବୀ-ମନ୍ଦିରରୁ ବାହାରିଲା ବେଳେ ହଠାତ୍ ଆକାଶ ପଥରେ ଶ୍ରୀକୃଷ୍ଣ ରଥ ନେଇ ଆସିଲେ । ସେଠାରେ ଚାରିଚକ୍ଷୁର ମିଳନ ଘଟିଲା ଏବଂ ରୁକ୍ମିଣୀଙ୍କ ବାମ ହସ୍ତଧରି ଶ୍ରୀକୃଷ୍ଣ ନନ୍ଦିଘୋଷ ରଥ ଉପରକୁ ତାଙ୍କୁ ଉଠାଇ ନେଲେ । ସଖୀ ସୁମେଧାର ହସ୍ତଧରି ମଧ୍ୟ ଉଠାଇ ଆଣିଲେ ସ୍ୱରଥକୁ ଏବଂ ଆନନ୍ଦ ମନରେ ଆକାଶ ମାର୍ଗରେ ରଥ ଚଳାଇ ନେଲେ ।

ହଠାତ୍ ଏ ସମ୍ବାଦ ଚତୁର୍ଦ୍ଦିଗରେ ଖେଳିଗଲା । ରୁକ୍ମିଣୀର ହରଣ ଶୁଣି ଭ୍ରାତା ରୁକ୍ମଣ ରେ-ରେକାର ଶବ୍ଦକରି ଧାଇଁଲା ।

Digitized by srujanika@gmail.com

ଏଣେ ଶିଶୁପାଳ ବାହାରେ ବେଦୀ ଉପରେ ବସିଥାଆନ୍ତି । ତାପରେ ଶ୍ରୀକୃଷ୍ଣ ଓ ରୁକ୍ମଣର ଯୁଦ୍ଧ ଲାଗିଲା ଏବଂ ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଚକ୍ରରେ ରୁକ୍ମଣର ଶିରଚ୍ଛେଦ ପାଇଁ ଉଦ୍ୟତ ହୋଇଛନ୍ତି, ସେତେବେଳେ ରୁକ୍ମିଣୀ ତାଙ୍କ ପାଦତଳେ ପଡ଼ି ଭ୍ରାତା ରୁକ୍ମଙ୍କ ଜୀବନ ଭିକ୍ଷା କରିଛନ୍ତି । ତହୁଁ ଶ୍ରୀକୃଷ୍ଣ ରୁକ୍ମଣକୁ ରଥ ସ୍ତମ୍ଭରେ ବାନ୍ଧି ପକାଇଲେ ।

ଏଣେ ବଳରାମ ଓ ଜରାସନ୍ଧଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା ଏବଂ ଶେଷରେ ବଳରାମ ଜରାସନ୍ଧର କେଶ ଧରି ଶତ ଯୋଜନ ଦୂରକୁ ଉଠାଇ କଚାଡ଼ି ଦେଲେ । ବଳଦେବ ସେଠାରୁ ଫେରି ଶ୍ରୀକୃଷ୍ଣଙ୍କୁ ଭେଟି ଦେଖିଲେ ଯେ ନିଜର ରଥରେ ଶ୍ରୀକୃଷ୍ଣ ରୁକ୍ମଙ୍କୁ ବାନ୍ଧିଛନ୍ତି । ସେ ବନ୍ଧୁଙ୍କୁ ଶାସ୍ତି ନ ଦେବାକୁ ଶ୍ରୀକୃଷ୍ଣଙ୍କୁ କହିଲେ । ଲଜ୍ଜାପାଇ ରୁକ୍ମଣ ଆଉ କୁଣ୍ଡିନ ନଗରକୁ ନ ଫେରି ବନରେ ପ୍ରବେଶ କଲେ । ଶିଶୁପାଳ ବେଦୀ ଉପରୁ ଲଜ୍ଜାର ସହିତ ଉଠି ଆସିଲେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ନେଇ ଦ୍ୱାରକାରେ ପ୍ରବେଶ କଲେ । ଦ୍ୱିତୀୟ ଦିନ ପିତା ଭୀଷ୍ମକ ଆସି ରୁକ୍ମିଣୀଙ୍କୁ ଶ୍ରୀକୃଷ୍ଣଙ୍କ ହସ୍ତରେ ସମର୍ପଣ କଲେ । ଚତୁର୍ଥୀ ଦିନ ଦ୍ୱାରକାପୁରୀ ସୁସଜ୍ଜିତ ହେଲା, ସୁବର୍ଣ୍ଣର ସାତକଳସ ପୂଜା କରାଗଲା ଓ କ୍ଷୀରି, ପିଠା ଭୋଜନ ଆଦି ଦିଆଗଲା । ସମସ୍ତେ ମଙ୍ଗଳରେ ରହିଲେ ।

## ତୁଳନାତ୍ମକ ଅଧ୍ୟୟନ

ହରିବଂଶ, ଭାଗବତ ଏବଂ ରୁକ୍ମିଣୀ ବିଭାର କଥାଭାଗ ସହିତ ଏହାର କଥାଭାଗର ଯେଉଁ କେତୋଟି ସାଦୃଶ୍ୟ ଓ ବୈସାଦୃଶ୍ୟ ପରିଦୃଷ୍ଟ ହୁଏ, ତାହା ଏଠାରେ ଆଲୋଚନା କଲେ, ଅସମୀଚୀନ ହେବ ନାହିଁ ।

Digitized by srujanika@gmail.com

# ॥ ଷୋଡ଼ଶ ॥

ଆଲୋଚ୍ୟ 'ଶ୍ରୀବେଡ଼ା'ର ପ୍ରାରମ୍ଭ ଯେପରି ସଂକ୍ଷିପ୍ତ, ସେହିପରି ନାଟକୀୟ ହୋଇଛି । ରୁକ୍ମିଣୀଙ୍କ ପିତା ମାତା ଏବଂ ଜନ୍ମ ଆଦି ବୃତ୍ତାନ୍ତ ଏଥିରେ ସ୍ଥାନ ପାଇନାହିଁ । ଦମଘୋଷଙ୍କ ପୁତ୍ର ଶିଶୁପାଳଙ୍କ ସହିତ ରୁକ୍ମିଣୀଙ୍କର ବିବାହ ଭ୍ରାତା ରୁକ୍ମ ଯେତେ-ବେଳେ ପିତା ଭୀଷ୍ମକ ଓ ମାତାଙ୍କ ଅନିଚ୍ଛା ସତ୍ତ୍ୱେ ଆୟୋଜନ କଲେ, ସେତେବେଳେ ବିକଳ ମନରେ ରୁକ୍ମିଣୀ ମାତାଙ୍କ ନିକଟରେ ଏହାର ପ୍ରତିବାଦ ଜଣାଇଛନ୍ତି—

'ଶୁଣସି ଆଗୋ ମାତ ଏ ମୋର ବଚନ ।
ପିତା ବରିଲେ ମୋତେ ଦମଘୋଷ ବଣ ॥
କେଣିକ ମୁହିଁ ଯେ ଯିବଇଁ ପଳାଇ ।
ନୋହିଲେ ମରିବି ମାଗୋ ଅଗ୍ନିରେ ଝାସଦେଇ ॥'

ଠିକ୍ ଏହିପରି ଏକ ଗୁରୁତର ପରିବେଶ ମଧ୍ୟରେ 'ଶ୍ରୀବେଡ଼ା'ର କଥାବସ୍ତୁ ଆରମ୍ଭ ହୋଇଛି । ମାତ୍ର ଭାଗବତରେ ପ୍ରଥମେ ରୁକ୍ମିଣୀ ଓ ତାଙ୍କର ପାଞ୍ଚଭ୍ରାତାଙ୍କ ଜନ୍ମ ଆଦିକଥା ବର୍ଣ୍ଣନା କରାଯାଇଛି—

ଭୀଷ୍ମକ ନାମେ ମହୀନାଥ ।
ବିଦର୍ଭ ନଗରେ ସମ୍ଭୂତ ॥
ତାହାର ପତ୍ନୀ ଗର୍ଭ'ଜାତ ।
ଏକ ଦୁହିତା ପାଞ୍ଚସୁତ ॥
ରୁକ୍ମ ଅଗ୍ରଜ ରୁକ୍ମରଥ ।
ଏ ବେନି ବଳ ଅପ୍ରମିତ ॥
ପୁଣି ହୋଇଲା ରୁକ୍ମବାହୁ ।
ତା'ର ପ୍ରତାପ କେବା କହୁ ॥

Digitized by srujanika@gmail.com

ଚତୁର୍ଥ ପୁତ୍ର ରୁକ୍ମ କେଶ ।
ପଞ୍ଚମ ରୁକ୍ମ ମାଳ୍ୟ ଶେଷ ॥
ଏହାଙ୍କ ଶେଷେ କନ୍ୟା ଜାତ ।
ସୁ ସାଧ୍ୱୀ କମଳା ସମ୍ଭୂତ ॥
ରୁକ୍ମିଣୀ ନାମେ ବିଦ୍ୟମାନ ।
ତା'ର ମହିମା ଏବେ ଶୁଣ ॥ (୩)

'ସପ୍ତଖଣ୍ଡ ହରିବଂଶ'ରେ ପ୍ରଥମେ କୁଣ୍ଡୀ ନଗର ଓ କୁଣ୍ଡୀ ନଗରର ଜନଜୀବନର ବର୍ଣ୍ଣନା ରହିଛି, ଏବଂ ପରେ ରୁକ୍ମିଣୀ ଓ ପାଞ୍ଚଭ୍ରାତାଙ୍କ ପରିଚୟ ପ୍ରଦାନ, ରୁକ୍ମିଣୀଙ୍କର ଯୌବନ ପ୍ରାପ୍ତି ଓ ସଖୀମାନଙ୍କ ସହିତ ପରିହାସ ଏବଂ ତା'ପରେ ବିବାହ ପ୍ରସ୍ତାବ ଇତ୍ୟାଦି ବର୍ଣ୍ଣନା କରାଯାଇଛି (୪) ।

ନାରାୟଣ ଦାସଙ୍କ ରଚିତ 'ଖଣ୍ଡିଆ ହରିବଂଶ'ରେ ଗୋଟିଏ ଅଧ୍ୟାୟରେ ରୁକ୍ମିଣୀ ବିବାହ ବିଷୟ ବର୍ଣ୍ଣିତ ହୋଇ ଥିଲେ ମଧ୍ୟ ସେଥିରେ ରୁକ୍ମିଣୀ ଏବଂ ତାଙ୍କ ଭ୍ରାତାଙ୍କ ଜନ୍ମ ଓ ପରିଚୟ ଆଦି ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଛି (୫) ।

---

(୩) ଶ୍ରୀମଦ୍‌ଭାଗବତ — ଦଶମସ୍କନ୍ଧ — ଦ୍ୱାରକାଲୀଳା—୮ ରାଜକିଶୋର ଦାସଙ୍କ ଦ୍ୱାରା ସଂକଳିତ—୫୨ଶ ଅଧ୍ୟାୟ—୨ୟ ସଂସ୍କରଣ-୧୯୫୧—ପୃ ୨୯୨ ।
(୪) ସପ୍ତମଖଣ୍ଡ ହରିବଂଶ—୬ଷ୍ଠ ଖଣ୍ଡ—୧ମ ମୁଦ୍ରଣ—୧୯୨୯-ରୁକ୍ମିଣୀର ବିବାହ ନିମନ୍ତେ ଅନ୍ୱେଷଣ—ପୃ ୨-୩ ।
(୫) ଖଣ୍ଡିଆ ହରିବଂଶ—ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା ପ୍ରକାଶିତ —୧୯୫୭—ନୂତନ ସଂସ୍କରଣ—ପୃ : ୨୭୪ ।

Digitized by srujanika@gmail.com

କାର୍ତ୍ତିକ ଦାସଙ୍କ 'ରୁକ୍ମଣୀ ବିଭା'ରେ ରୁକ୍ମଣୀ ଏବଂ ତାଙ୍କ ଭ୍ରାତାଙ୍କର ସଂକ୍ଷିପ୍ତ ପରିଚୟ ପ୍ରଦାନ କରାଯାଇଛି । ଶ୍ରୀକୃଷ୍ଣ ଦ୍ୱିଜ ମୁଖରୁ ରୁକ୍ମଣୀଙ୍କର ରୂପ ଓ ବିଳାସ ଆଦି ବିଷୟରେ ଶୁଣିଛନ୍ତି । ପ୍ରାଚୀନ କାବ୍ୟ-ସୁଲଭ ଶୈଶବ, କୈଶୋର ଓ ଯୌବନ ବର୍ଣ୍ଣନା କରାଯାଇଛି । (୬)

ଖ୍ରିଷ୍ମକଙ୍କ ରାଜ୍ୟକୁ ଶ୍ରୀବେଢ଼ାରେ ପ୍ରଥମେ 'କଳିଙ୍ଗ' ଦେଶ (୭) ଓ ପରେ 'କୁଣ୍ଡିନଗ୍ର' ବା କୁଣ୍ଡୀ ନଗର (୮) ବୋଲି କୁହାଯାଇଛି । 'ଭାଗବତ'ରେ ଏକାଧିକବାର ରୁକ୍ମଣୀଙ୍କ ଜନ୍ମପୀଠକୁ ବିଦର୍ଭ ବୋଲି କୁହାଯାଇଛି (୯) । ତଥାପି 'ରୁକ୍ମଣୀ ବିବାହ'

---

(୬) ରୁକ୍ମଣୀ ବିଭା—କାର୍ତ୍ତିକ ଦାସ—୨ୟ ପ୍ରକାଶ—୧୯୬୧—
ଜସ୍ୱ ପ୍ରେସ—ପୃ : ୮-୧୩ ।

(୭) 'କଳିଙ୍ଗ ଦେଶର ଯେ ଅଟଇ ରାଜହଂସ
ରୁକ୍ମଣୀର ବିଭା ଯେ ଶୁଣସି ହରିବଂଶ । ୯ ।

(୮) 'କୁଣ୍ଡିନଗ୍ର ପୁରେ ଯାଇ ହୋଇଲେ ପରବେଶ ।
ବାରତା ପାଇଲ ଯେ ଖ୍ରିଷ୍ମକଙ୍କ ରାଜହଂସ । ୬୨ ।

(୯) 'ଖ୍ରିଷ୍ମକ ନାମେ ମହୀନାଥ, ବିଦର୍ଭ ନଗରେ ସମ୍ଭୂତ ।'
(୫୨ ଅଧ୍ୟାୟ—ପୃ ୨୯୨)

× × ×

'ବିଦର୍ଭ ନନ୍ଦନୀର ବାଣୀ, ଗୋବିନ୍ଦ ବିପ୍ର ମୁଖୁଁ ଶୁଣି ।'
(୫୨ ଅଧ୍ୟାୟ—ପୃ : ୨୯୬)

× × ×

'କୃଷ୍ଣ ଆଗମ କଥା ଶୁଣି, ବିଦର୍ଭ ପୁରେ ଯେତେ ପ୍ରାଣୀ ।'
(୫୨ ଅଧ୍ୟାୟ—ପୃ ୨୯୯)

Digitized by srujanika@gmail.com

ଆଖ୍ୟାନ ମଧ୍ୟରେ (ତିନୋଟି ଅଧ୍ୟାୟ-ଯଥା—୫୭ଶ, ୫୭ଶ ଓ ୫୮ଶ ଅଧ୍ୟାୟ) 'କୁଣ୍ଡି ନଗର' ବୋଲି ମଧ୍ୟ ଉଲ୍ଲେଖ କରା-ଯାଇଛି । (୧୦)

'ସପ୍ତଖଣ୍ଡ ହରିବଂଶ'ରେ 'କୁଣ୍ଡୀ କଟକ' ବୋଲି କୁହାଯାଇଛି (୧୧) । 'ଖଣ୍ଡିକିଆ ହରିବଂଶ'ରେ ମଧ୍ୟ ସେହି 'କୁଣ୍ଡି' କଟକ କଥା ଲେଖାଅଛି ((୧୨) । 'ରୁକ୍ମଣୀ ହରଣ'ରେ କିନ୍ତୁ ବିଦର୍ଭ, ଦେଶକଥା ଲେଖା ଅଛି (୧୩) ।

'ସପ୍ତଖଣ୍ଡ ହରିବଂଶ'ରେ ଏହାର ବେଶ ଏର ବର୍ଣ୍ଣିତ ହୋଇ ଥିବାରୁ ରାଜକୁମାରୀ ଯୁବତୀ ରୁକ୍ମଣୀଙ୍କ ସହିତ ସୁମେଧା ଆଦି

(୧୦) 'ସଂକଳ୍ପ ଭଙ୍ଗେ ପଳାଇଲି, କୁଣ୍ଡି ନଗରେ ନ ପଶିଲି ।'

× × ×

କୁଣ୍ଡି ନଗରେ ନ ପଶିବି, ଜୀବନ୍ତେ ଯେତେକାଳ ଥିବି ।'

(୫୮ଶ ଅଧ୍ୟାୟ)

(୧୧) 'କୁଣ୍ଡୀ କଟକରେ ମଧୁବନ ନାମେ ଦେଶ
କୁଣ୍ଡଳୀ ପର୍ବତ ତଳେ ବେଣୀ ନଦୀ ପାଶ ।'
(ରୁକ୍ମଣୀଙ୍କ ବିବାହ ନିମନ୍ତେ ବର ଅନ୍ୱେଷଣ—
ଷଷ୍ଠ ଖଣ୍ଡ ପୃ ୨)

(୧୨) 'କୁଣ୍ଡୀ କଟକର ରାଜା ଭୀଷ୍ମକ ନୃପତି,
ଅପୂର୍ବ ଦୁହିତା ତାର ରୁକ୍ମଣୀ ଅଟନ୍ତି ।'
(ରୁକ୍ମଣୀ ହରଣ—ପୃ ୨୨୮)

(୧୩) 'ଏଥୁଅନନ୍ତରେ ଶୁଣ ଅପୂର୍ବ ରସ,
ପ୍ରତିବନ ଗୁରୁ ଥାଇ ବିଦର୍ଭ ଦେଶ ।'
(ଶାସ୍ତ୍ର ଗ୍ରନ୍ଥ—ପୃ ୮)

Digitized by srujanika@gmail.com

ସହଚରୀଙ୍କର ହାସ ପରିହାସ, ଉପବନରେ ଭ୍ରମଣ ଏବଂ ଦାସୀ ସୁମେଧାର ଦୁର୍ଯ୍ୟୋଧନ, ଶ୍ରୀକୃଷ୍ଣ ପ୍ରମୁଖଙ୍କ ଗୁଣ କୀର୍ତ୍ତନ ଆଦି ସ୍ଥାନ ପାଇଛି ।

'ଭାଗବତ'ରେ କିନ୍ତୁ ଏ ସବୁର ବିସ୍ତୃତ ବର୍ଣ୍ଣନା ନାହିଁ । ଦ୍ୱାରିକାପୁରର ଲୋକଙ୍କ ମୁଖରୁ କୃଷ୍ଣ ଚରିତ ଶୁଣି ରୁକ୍ମଣୀ ମନେ ମନେ ଶ୍ରୀକୃଷ୍ଣଙ୍କୁ ବରଣ କରିଛନ୍ତି (୧୪) । 'ଖଣ୍ଡିକିଆ ହରିବଂଶ'ରେ ରୁକ୍ମଣୀ ପୂର୍ବରୁ କୃଷ୍ଣ ଚରିତ ଜାଣିଥିବା କଥା ଉଲ୍ଲେଖ ଅଛି । ତେଣୁ, ବିବାହର ସ୍ୱଳ୍ପଦିନ ପୂର୍ବରୁ ଶିଶୁପାଳଙ୍କ ସହିତ ତାଙ୍କର ବିବାହ ହେଉଛି ଜାଣି 'ହା କୃଷ୍ଣ'—'ହା କୃଷ୍ଣ' କରି ବାହୁନି ଉଠିଛନ୍ତି । 'ଶ୍ରୀବେଢ଼ା'ରେ ମଧ୍ୟ ଠିକ୍ ସେହିପରି ରୁକ୍ମଣୀ ପୂର୍ବରୁ ଶ୍ରୀକୃଷ୍ଣ କଥା ଶୁଣିଛନ୍ତି, ଯାହାର ସୂଚନା ଏଥିରେ ଦିଆଯାଇଛି । ତେଣୁ ମା'ଙ୍କ ନିକଟରେ କାନ୍ଦି କାନ୍ଦି 'ଦ୍ୱାରିକାଧିପତି ଶ୍ରୀକୃଷ୍ଣଙ୍କୁ ନେଇ ଆସ ଯାଇ' ବୋଲି ସେ କହିଛନ୍ତି ।

'ରୁକ୍ମଣୀ ବିଭା'ରେ କିନ୍ତୁ ଶ୍ରୀକୃଷ୍ଣ ପୂର୍ବରୁ ରୁକ୍ମଣୀଙ୍କ ଖବର ରଖିଛନ୍ତି ଗୁରୁ ନିକଟରୁ (୧୫) । କେବଳ ସେତିକି ନୁହେଁ,

---

(୧୪) 'ଦ୍ୱାରକାପୁର ଲୋକ ଆସି, କହନ୍ତି ତାର ଆଗେ ବସି ।
ନିରତେ କୃଷ୍ଣ କଥା ଶୁଣି, ସେ କନ୍ୟା ମନେ ମନେ ଗୁଣି
ଆତ୍ମା ସଦୃଶେ ଶୁଣିବର, ମନେ ବରିଲା ଚକ୍ରଧର ।'
( ୫୭ଶ ଅଧ୍ୟାୟ – ପୃ ୧୯୬ )

(୧୫) 'ଗୁରୁ ମୁଖୁଁ ଶୁଣିଲେ ଅନେକ ରୂପ ଗୁଣ,
ଶରଧା କଲେକ ଶୁଣି ପ୍ରଭୁ ନାରାୟଣ ।'

Digitized by srujanika@gmail.com

ରୁକ୍ମଣୀ ଶ୍ରୀକୃଷ୍ଣଙ୍କ କଥା ପିଲାଦିନେ ପିତାଙ୍କ ସହିତ ରାଜସଭାରେ ଏକ ବୃଦ୍ଧ ମୁଖରୁ ଶୁଣି ମୋହିତ ହୋଇଥିଲେ (୧୬)।

ରୁକ୍ମଣୀଙ୍କ ଇଚ୍ଛା ଜାଣି ରାଣୀ ସତ୍ୟବତୀ ରାଜା ଭୀଷ୍ମକଙ୍କୁ ତାହା କହିଲେ, ଏବଂ ଭୀଷ୍ମକଙ୍କ ଜ୍ୟେଷ୍ଠପୁତ୍ର ରୁକ୍ମଣଙ୍କୁ ଡକାଇ ଶିଶୁପାଳ ପରିବର୍ତ୍ତେ ଶ୍ରୀକୃଷ୍ଣଙ୍କୁ ବର କରିବାକୁ ଜଣାଇଲେ। ଏହି ସମସ୍ତ କଥା 'ସପ୍ତଖଣ୍ଡ ହରିବଂଶ'ରେ ଲେଖାଅଛି। ଏକଥା ଶୁଣି ରୁକ୍ମଣ କ୍ରୋଧରେ କହିଲା—ଶ୍ରୀକୃଷ୍ଣ ମହାପାପୀ। ପାପ-ପୁଣ୍ୟ ଜ୍ଞାନ ତା'ର ନାହିଁ। ଷଣ୍ଢ, ଅଘା, ଜାମଳା ଆଦିଙ୍କୁ ମାରି ମହାପାପ ଅର୍ଜ୍ଜନ କରିଛି। ମାଉସୀ, ପିଉସୀ, ଖୁଡ଼ି, ମାଇଁ ଆଦିଙ୍କୁ କୁଞ୍ଜବନରେ ହରଣ କରିଛି। ବିଶ୍ୱାସଘାତକତା କରି ଚାଣୁର, ମୁଷ୍ଟିକ, କୁବଳୟା ଆଦିଙ୍କୁ ମାରି, ଗୋପୀଙ୍କ ଘରୁ ଲବଣୀ, ଛେନା ଚୋରିକରି ଖାଇଛି ଇତ୍ୟାଦି। ତେଣୁ, ଭୀଷ୍ମକଙ୍କ ଅନିଚ୍ଛା ସତ୍ତ୍ୱେ ବିବାହ ଉତ୍ସବର ପ୍ରସ୍ତୁତି ଚାଲିଲା। ମାତ୍ର ଏ ସମସ୍ତ କଥା 'ଭାଗବତ', 'ଖଣ୍ଡିକିଆ ହରିବଂଶ' ଓ ଶ୍ରୀବେଡ଼ା'ରେ ନାହିଁ। 'ରୁକ୍ମଣୀ ବିଭା' କାବ୍ୟରେ ମଧ୍ୟ ନାହିଁ। ତେଣୁ ସପ୍ତଖଣ୍ଡ ହରିବଂଶରେ ଭୀଷ୍ମକ ଚରିତ୍ର ଏବଂ ଭାଗବତ, ଖଣ୍ଡିକିଆ ହରିବଂଶ ଓ ଶ୍ରୀବେଡାରେ ଭୀଷ୍ମକଙ୍କ ଚରିତ୍ର ମଧ୍ୟରେ ସାମଞ୍ଜସ୍ୟ ଲକ୍ଷିପାରି ନାହିଁ। ସପ୍ତଖଣ୍ଡ ହରିବଂଶରେ

---

(୧୬) 'ବାଳ କାଳେ ଥିଲି ପିତା ସଭାରେ,
ଦିନେ ପ୍ରବେଶ ହୋଇ ଏକ ବୃଦ୍ଧ।
କୃଷ୍ଣର ଗୁଣ ମହିମା କହିଲା।
ସେହିଦିନୁ ମୋର ମନେ ରହିଲା।
(୫ମ ଗୁଚ୍ଛ—ପୃ : ୨୦)

Digitized by srujanika@gmail.com

ଖ୍ରିଷ୍ଟଙ୍କ ହୃଦୟରେ ପିତୃତ୍ୱ ଯେପରି ଫୁଟି ଉଠିଛି, ଅନ୍ୟତ୍ର ତାହା ଦୁର୍ଲଭ ।

'ଭାଗବତ'ରେ ରୁକ୍ମଣୀ ଶ୍ରୀକୃଷ୍ଣଙ୍କ ପ୍ରତି ଚିଠାଉରେ ଶ୍ରୀକୃଷ୍ଣ କିପରି ତାଙ୍କୁ ହରଣ କରିବେ, ସେ ବିଷୟରେ ନିଜେ ଯୋଜନା ପ୍ରସ୍ତୁତ କରିଛନ୍ତି ।

'ତହିଁକି କହିବି ଉପାୟ,
ଶୁଣିବା ପ୍ରଭୁ ଦେବରାୟ ।
ଆମ୍ଭର ଅଛି କୁଳାଚାର,
କନ୍ୟାକୁ କରନ୍ତି ବାହାର ।
ଭବାନୀ ପୂଜିବା ନିମନ୍ତେ,
ଅମ୍ବିକା ଗୃହ ଗ୍ରାମ ଅନ୍ତେ ।
ଯାହା ଉଛବେ ମୁହିଁ ଯିବି,
ଭବାନୀ ଚରଣେ ପୂଜିବି ।
ପଥେ ଆସିବା ବେଳେ ମୋତେ,
ରାଜାଏ ଦେଖିବେ ସମସ୍ତେ ।
ଥିବି ମୁଁ ସ୍ତ୍ରିରଙ୍କର ମେଳେ,
ସେଠାରୁ ହରି ମୋତେ ବଳେ ।'

ମାତ୍ର 'ସପ୍ତଖଣ୍ଡ ହରିବଂଶ', 'ଖଣ୍ଡିକିଆ ହରିବଂଶ' ଏବଂ 'ଶ୍ରୀବେଢ଼ା'ରେ ରୁକ୍ମଣୀଙ୍କର ଏପରି ପ୍ରସ୍ତାବର ଉଲ୍ଲେଖ ନାହିଁ ।

ଦେବୀ ମନ୍ଦିରରୁ ନିଷ୍କ୍ରାନ୍ତ ହେଲାବେଳେ ଯେତେବେଳେ ଶ୍ରୀକୃଷ୍ଣ ରୁକ୍ମଣୀଙ୍କୁ ନେବାପାଇଁ ରଥ ଆଣି ଉପସ୍ଥିତ ହୋଇଛନ୍ତି, ସେତେବେଳେ 'ସପ୍ତଖଣ୍ଡ ହରିବଂଶ'ରେ ରୁକ୍ମଣୀ ଲଜ୍ଜା ପାଇ

Digitized by srujanika@gmail.com

ମୁଣ୍ଡ ଯୋଡିଛନ୍ତି ଓ ନମସ୍କାର ହୋଇଛନ୍ତି । ତାପରେ ଶ୍ରୀକୃଷ୍ଣ ହାତ ବଢ଼ାଇବା ପରେ ତାହା ଦେଖି ରୁକ୍ମଣୀ ନିଜ ହାତ ବଢ଼ାଇ ଦେଇଛନ୍ତି ଶ୍ରୀକୃଷ୍ଣଙ୍କ ହସ୍ତକୁ (୧୭) । 'ଖଣ୍ଡିକିଆ ହରିବଂଶ'ରେ ମଧ୍ୟ ତଦନୁରୂପ ବର୍ଣ୍ଣିତ ହୋଇଅଛି (୧୮)। ଆଲୋଚ୍ୟ 'ଶ୍ରୀବୈଢ଼ା'ରେ ମଧ୍ୟ ତଦ୍ରୂପ, କବି ବର୍ଣ୍ଣନା କରିଛନ୍ତି—

'ବେଗେ ଧରିଲେ ହରି ରୁକ୍ମଣୀ ବାମକର ।
ନେଇଣ ବସାଇଲେ ଯେ ରଥର ଉପର ॥

ମାତ୍ର 'ଭାଗବତ'ର ବର୍ଣ୍ଣନା ସାମାନ୍ୟ ଭିନ୍ନ ଧରଣର--

'ଗଗନେ ଦେଖି କୃଷ୍ଣରଥ,
ବେଗେ ଟେକିଲା ବେନିହସ୍ତ ।
ରଥେ ଉଠିଲା ପ୍ରାଣ୍ଡମଣି,
କର ଧଇଲେ ଚକ୍ରପାଣି ।'

( ୫୭ ଅଧ୍ୟାୟ—ପୃ ୩୦୧ )

'ଭାଗବତ'ରେ ପ୍ରଥମେ ନିଜେ ରୁକ୍ମଣୀ ରଥ ଆସୁଥିବାର ଦେଖି ଦୁଇହାତ ଟେକିଲେ । ତା'ପରେ ଶ୍ରୀକୃଷ୍ଣ ତାଙ୍କ ହସ୍ତଧରି ରଥ ଉପରକୁ ଉଠାଇ ଆଣିଲେ । 'ଶ୍ରୀବୈଢ଼ା', 'ସପ୍ତଖଣ୍ଡ

---

(୧୭) 'ଜଗନ୍ନାଥ ଭଲନ୍ତି କରିବା ନିଜ କାର୍ଯ୍ୟ
ରଥେ ଥାଇ ଶ୍ରୀହସ୍ତ ବଢ଼ାନ୍ତି ଦେବରାଜ ।
ଦେଖିଣ ଦେବୀ ରୁକ୍ମଣୀ ହସ୍ତ ଦେଲେ ଟେକି,
ତତ୍‌କ୍ଷଣେ ଶ୍ରୀହସ୍ତ ଧଇଲେ ବନମାଳୀ ।'

( ୬ଷ୍ଠ ଖଣ୍ଡ—ପୃ ୩୫)

(୧୮) 'ନନ୍ଦଘୋଷେ ଥାଇ କର ଦେଲେ ସେ ବଢ଼ାଇ,
ଶୂନ୍ୟେ ଥାଇ ହରି ନେଲେ ପ୍ରଭୁ ଗରୁଡ଼ାଗ୍ରୀ ।' (ପୃ ୨୨୭)

Digitized by srujanika@gmail.com

ହରିବଂଶ', 'ଝଣ୍ଟିକିଆ ହରିବଂଶ'ର ରୁକ୍ମଣୀ ଚରିତରେ ସ୍ୱାଭାବିକତା ଯେପରି ରଖାଯାଇଛି, ଭାଗବତରେ ସେପରି ନାହିଁ । 'ରୁକ୍ମଣୀ ବିଭା'ରେ ମଧ୍ୟ ସେହିପରି ସ୍ୱାଭାବିକ ସୁନ୍ଦର ବର୍ଣ୍ଣନା ରହିଛି ।

'ଅତି ବେଗେ ରଥୁଁ ଓହ୍ଲାଇଲେ ଯଦୁସାଇଁ,
ରୁକ୍ମଣୀର କର କରେ ଧଇଲେକ ଯାଇଁ ॥
ରଥ ଗଜ ଅଶ୍ୱ ଛନ୍ଦି ଅଛନ୍ତି ଅପାର,
ନେଇ ବସାଇଲେ ନନ୍ଦିଘୋଷର ଉପର ॥'

ନାରୀର ଲଜ୍ଜାଶୀଳ ପ୍ରକୃତି ପୂର୍ବୋକ୍ତ ରଚନାମାନଙ୍କରେ ଯେପରି ସ୍ଥାନ ପାଇ ପାରିଛି, ଭାଗବତରେ ତାହା କ୍ଷୁଣ୍ଣ ହୋଇ-ଥିବାର ପରିଦୃଷ୍ଟ ହୁଏ ।

'ଶ୍ରୀବେଡ଼ା' (୧୯), 'ଝଣ୍ଟିକିଆ ହରିବଂଶ' (୨୦) ଏବଂ 'ଭାଗବତ' (୨୧) ରେ ବର୍ଣ୍ଣିତ ହୋଇଛି—ଶ୍ରୀକୃଷ୍ଣ ନିଜର ନନ୍ଦିଘୋଷ ରଥକୁ ଆକାଶମାର୍ଗରେ ଆଣି ରୁକ୍ମଣୀକୁ ନେଲ

---

(୧୯) ଶ୍ରୀବେଡ଼ା—

'ଦେଖନ୍ତୁ ବାହାର ଯେ ହୋଇଲେ ରୁକ୍ମଣୀ
ଆକାଶରେ ରଥ ଚପ ଟେକିଲେ ଚକ୍ରପାଣି' ।

(୨୦) ଝଣ୍ଟିକିଆ ହରିବଂଶ—

'ଗଗନରୁ ଖସିଲେ ସେ କମଳାର ସାଇଁ
ନନ୍ଦିଘୋଷେ ଥାଇ କର ଦେଲକ ବଢ଼ାଇ' । (ପୃ: ୨୭୭)

(୨୧) ଭାଗବତ—

'ଶୂନ୍ୟକୁ ଚାହାନ୍ତେ ସଧୀରେ, ରଥେ ଦେଖିଲ୍ଲ ଚକ୍ରଧରେ' ।
(୫୭ ଅଧ୍ୟାୟ—ପୃ: ୩୦୧)

Digitized by srujanika@gmail.com

ଗୁଳଗଲେ । 'ରୁକ୍ମଣୀ ବିଭା' ରେ ମଧ୍ୟ ତଦ୍ରୂପ ବର୍ଣ୍ଣିତ ହୋଇଛି । ମାତ୍ର ସପ୍ତଖଣ୍ଡ ହରିବଂଶରେ ବର୍ଣ୍ଣନା ସାମାନ୍ୟ ଭିନ୍ନ । ଏଥିରେ ଶ୍ରୀକୃଷ୍ଣ ନିଜେ ସ୍ଥଳମାର୍ଗରେ ରଥନେଇ ଆସି ରୁକ୍ମଣୀଙ୍କୁ ଘେନି ଯିବାର ଉଲ୍ଲେଖ ଅଛି (୨୨) । ମାତ୍ର ଠିକ୍ ହରଣ ସମୟରେ 'ଶୂନ୍ୟ ମାର୍ଗେ' ଚଳଲେ ବୋଲି ମଧ୍ୟ ଲେଖାଯାଇଛି (୨୩) । 'ସପ୍ତଖଣ୍ଡ ହରିବଂଶ'ର ପରିସର ବିସ୍ତୀର୍ଣ୍ଣ । ତେଣୁ ଏଥିରେ ବ୍ରାହ୍ମଣର ପୂର୍ବଜନ୍ମର ଅଭିଶାପ କଥା ବର୍ଣ୍ଣିତ ହୋଇଛି । ମାତ୍ର ଅନ୍ୟତ୍ର ଏହାର ସୂଚନା ମିଳେ ନାହିଁ । ରୁକ୍ମଣୀଙ୍କର ଏହି ଦୂତ କାର୍ଯ୍ୟ କରିବା ପରେ ତା'ର ଅଭିଶାପ ମୋଚନ ହୋଇ ଯାଇଛି ।

---

(୨୨) ସପ୍ତଖଣ୍ଡ ହରିବଂଶ—

'ଉଦ୍ଧବ ବୋଇଲେ ଆଜ୍ଞା ହୋଇବ ଯଦ୍ୟପି
ତୋର ଅନୁଗ୍ରହେ ଆକାଶକୁ ଯିବ କ୍ଷେପି ।
ଶ୍ରୀଜଗନ୍ନାଥ ବୋଇଲେ ହେବ ସ୍ଥୈର୍ଯ୍ୟ କର୍ମ
ବଳେ ନେବାର ଅଟଇ କ୍ଷତ୍ରିୟର ଧର୍ମ ।
ଏହି ସୈନ୍ୟର ଭିତରେ ରଥ ବେଗେ ବାହା
ଯେ ଆସିବ ସଂଗ୍ରାମକୁ ମାରିବି ମୁଁ ତାହା ।
ଏତେ ବୋଲିଣ ରଥକୁ କଲେ ଭୂମିଗତ
ଦେଖିଣ ଶଙ୍କା ପାଇଲେ ସବୁ ନରନାଥ' ।
(ଦ୍ବିତୀୟ ଖଣ୍ଡ—ପୃ: ୩୫)

(୨୩) 'ରଥ ଘେନି ଉତ୍ତରନ୍ତ ଚଳନ୍ତେ ଶୂନ୍ୟମାର୍ଗେ
ଚମତ୍କାର ହୋଇ ସ୍ବର୍ଗିରହିଛନ୍ତି ସର୍ବେ ।'
(ଦ୍ବିତୀୟଖଣ୍ଡ—ପୃ: ୩୫)

Digitized by srujanika@gmail.com

॥ ଅଠେଇଶ ॥

ବିବାହ ଉତ୍ସବ ଉପଲକ୍ଷେ ନଗର ସାରା ପ୍ରାସାଦ କାନ୍ଥରେ କର୍ପୂରର ବିଭିନ୍ନ ଚିତ୍ର ଅଙ୍କନ କରି ସୁସଜ୍ଜିତ କରିବାର ପ୍ରଥା ପ୍ରଚଳିତ ଥିଲା । ସେତେବେଳେ କାନ୍ଥରେ ମତ୍ସ୍ୟ, କଚ୍ଛପ, ମହାଭାରତ ଯୁଦ୍ଧ, ଖର୍ଜ୍ଜୁର, କଦଳୀ, ଆମ୍ବ, ପଣସ, ଜାମ୍ବ ଏବଂ ଗରୁଡ଼, ମୃଗ, ଗଣ୍ଡା, ଗଯୂଳ ଆଦି ଜୀବଜନ୍ତୁର ଚିତ୍ର ଚିତ୍ରଣ କରାଯାଉଥିଲା । ସାତକଳସ ମଧ୍ୟ ସ୍ଥାପନ କରାଯାଇଥିଲା । ପ୍ରଥମ କଳସ—ବିଘ୍ନନାଶକ ଗଣେଶ, ଦ୍ୱିତୀୟ କଳସ ବ୍ରହ୍ମା, ତୃତୀୟ କଳସ ବାସୁକୀ, ଚତୁର୍ଥ କଳସ ପୁରନ୍ଦର, ପଞ୍ଚମ କଳସ ପୁରୁଷୋତ୍ତମ, ଷଷ୍ଠ କଳସ ହଳଧର ଓ ସପ୍ତମ କଳସ ବରୁଣଙ୍କର ପ୍ରତିନିଧି ସ୍ୱରୂପ ପୂଜା କରାଯାଉଥିଲା । ଅନ୍ୟଏକ କଳସ ଅଷ୍ଟଅ ସ୍ତ୍ରୀମାନେ ନେଉଥିଲେ ।

କନ୍ୟାଦାନ ପରେ ଯୌତୁକ ଦେବାର ପ୍ରଥା ମଧ୍ୟ ସମାଜରେ ସେତେବେଳେ ପ୍ରଚଳିତ ଥିଲା । ତେଣୁ ଭିଷ୍ମକ ଅନେକ ଧନସମ୍ପତ୍ତି ଯୌତୁକ ସ୍ୱରୂପ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କରିଛନ୍ତି ।

'ଭଣ୍ଡାରନ ଜାଣିଣ ଯେ ଭିଷ୍ମକ ଅଇଲେ ।
ରୁକ୍ମଣୀଙ୍କୁ ସମର୍ପି ଅନେକ ଧନ ଦେଲେ ।'

ଅତିଥି ସତ୍କାର କରିବା ଦେବତା ପୂଜା ସହିତ ସମାନ । ତେଣୁ ନିଜେ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ବୃଦ୍ଧ ବ୍ରାହ୍ମଣଙ୍କର ସସମ୍ମାନ ସେବା କରିଛନ୍ତି—

'ତକ୍ଷଣେ ବ୍ରାହ୍ମଣଙ୍କୁ ମାନ୍ୟ ଧର୍ମକରି ।
ଆସନ ଭୋଜନ ଦେଇ ଯେ ବଚନ ପଚ୍ଛରି ।'

ଇରମ (ବାସୁଦେବପୁର)
ଜିଲ୍ଲା ବାଲେଶ୍ୱର

ମନୀନ୍ଦ୍ର ମହାନ୍ତି
ବାହୁଡ଼ାଯାତ୍ରା । ୧୧.୭.୧୯୮୧

Digitized by srujanika@gmail.com

# ଶ୍ରୀଚଉଢ଼ା

ବା

# ରୁକ୍ମିଣୀ ବିବାହ ଲେଖନ

Digitized by srujanika@gmail.com

# ଶ୍ରୀଚେଡ଼ା
## ବା
# ରୁକ୍ମିଣୀ ବିବାହ ଲେଖନ

॥ ଶ୍ରୀ ଗଣେଶାୟ ନମଃ ॥

ବନ୍ଦଇଁ ଗଣବାଇ ଯେ ଗଜଶିର ବାଳ ।
ଶିରରେ ସିନ୍ଦୂର ଶୋଭା କପୋଳେ ଯାହାର । ୧ ।
ଅମୃତ ଲଡ୍ଡୁ ଯେ କରଇ ଆହାର ।
ପ୍ରଥମରେ ପୂଜା ମୁଁ ଯେ କରଇ ତାହାର । ୨ ।
ସପତ ସିନ୍ଦୂ ଚୋଳ ଧରଇ କରସ୍ଥଳ ।
ଜୟ ତୁ ଗଜମୁଖ ପେଟ ତୋ ଥୋଅଳ । ୩ ।

---

୧ । ଗଣବାଇ—ଶ୍ରୀଗଣେଶ । ସେ ବିଘ୍ନନାଶନ । ତେଣୁ ତାଙ୍କୁ ପ୍ରଥମେ ବନ୍ଦନା କରାଯାଏ । ସେ ହସ୍ତୀମୁଖ ବୋଲି ହୁଏତ କେହି ତାଙ୍କୁ ହତାଦର କରିପାରନ୍ତି । ତେଣୁ ସବୁ ଦେବତା ଶପଥ ନେଇଥିଲେ ଯେ ପ୍ରଥମେ ଗଣେଶ ପୂଜା ପାଇଲା ପରେ ସେମାନେ ପୂଜା ପାଇବେ । ବାଳ—ପୁତ୍ର ।

୨ । ଅମୃତ ଲଡ୍ଡୁ—ମହାଦେବ ଶିବ ଚତୁର ପଣର ପୁରସ୍କାର ସ୍ୱରୂପ ଅମୃତ ଲଡ୍ଡୁ ଗଣେଶଙ୍କ ହସ୍ତରେ ପ୍ରଦାନ କରିଥିଲେ । ଏହା ତାଙ୍କର ଅତିପ୍ରିୟ ଖାଦ୍ୟ ।

୩ । ଥୋଅଳ, ଥନ୍ଦଳ—ମୋଟା ବା ପୃଥୁଳ ।

Digitized by srujanika@gmail.com

ଜୟ ତୁ ହରିହର ହେ ତ୍ରିଭୁବନ ମୋହନ ।
ବୃଷଭ-ବାହନ ଯେ ଗରୁଡ଼-ଆସନ । ୪ ।

ଶଙ୍ଖ, ଚକ୍ର ଶୋଭା ଯାର ହସ୍ତ ।
ବଜାଇ ଡମ୍ବରୁ ତ୍ରିଶୂଳ ତିନ ନେତ୍ର । ୫ ।

ବନ୍ଦଇଁ ସରସ୍ୱତୀ ଗୋ ବ୍ରହ୍ମାର ଦୋହିତା ।
ସୁସ୍ୱର କଣ୍ଠେ ମାଗୋ ମୋହିଲୁ ଶିରପତି । ୬ ।

ତୁ ଦେବୀ ଅନୁଗ୍ରହ କରସି ଗୋ ମୋତେ ।
ରୁକ୍ମିଣୀ କଳସା ଯେ ସ୍ଫୁରୁ ମୋର ଚିତେ । ୭ ।

କାଶୀ ନଗ୍ରପୁରେ ଯେ ଜନମ ତୋର ସ୍ଥିତି ।
ଦେସି ପୂରଣ ମା ଗୋ କରଇ ଭକତି । ୮ ।

କଳିଙ୍ଗ ଦେଶର ଯେ ଅଟଇ ରାଜହଂସ ।
ରୁକ୍ମିଣୀର ବଭା ଯେ ଶୁଣସି ହରିବଂଶ । ୯ ।

---

୪ । ହରିହର—ହରି-ବିଷ୍ଣୁ, ହର-ଶିବ । ତ୍ରିଭୁବନ—ତ୍ରିଭୁବନ ଏଠାରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନପୁର । ବୃଷଭ—ଶିବଙ୍କ ବାହନ । ଗରୁଡ଼—ବିଷ୍ଣୁଙ୍କ ବାହନ ।

୬ । ଦୋହିତା—ଦୌହିତ୍ରୀ—ଝିଅର ଝିଅ । ଏଠାରେ କିନ୍ତୁ ବ୍ରହ୍ମାଙ୍କର ଝିଅ ଅର୍ଥରେ ପ୍ରଯୁକ୍ତ । ଶିରପତି, ଶିରିପତି—ଶ୍ରୀପତି—ବିଷ୍ଣୁ ।

୭ । କରସି—କର, ପ୍ରାଚୀନ ଓଡ଼ିଆ ଧାତୁରୂପ । ରୁକ୍ମିଣୀ ଶବ୍ଦଟି ରୁକ୍ମୁଣୀ ଅର୍ଥରେ ସମଗ୍ର ଗ୍ରନ୍ଥଟିରେ ସ୍ଥାନ ପାଇଛି । କଳସା—ଅଗ୍ରଲେଖର କଳସା ଅଂଶଟି ଦ୍ରଷ୍ଟବ୍ୟ । ଚିତେ—ଚିତ୍ତେ ।

୮ । ଦେସି—ଦିଅ ।

୯ । ରାଜହଂସ—ରାଜଶ୍ରେଷ୍ଠ । ଶୁଣସି—ଶୁଣ ।

Digitized by srujanika@gmail.com

ସୋହଇ ରୁକ୍ମଣୀ ଯେ ମଦନର ଶର ।
ରୂପ ଯଉବନ ଧନ୍ୟ ଅଟଇ ତାହାର । ୧୦ ।
ଧନ୍ୟ ସେ ଦେଶ ରୁକ୍ମଣୀ ଗୋ ଉପୁଜିଲ ତୁମ୍ଭେ ।
ହୁଳହୁଳି ଦିଅ ଗୋ କହୁଅଛୁଁ ଆମ୍ଭେ । ୧୧ ।
ଚେଦି ଦେଶ ନଗ୍ର ଯେ ଦମଘୋଷ ରାୟେ ।
ତାହାର ତନୟ ଯେ ଶିଶୁପାଳ ହୋଏ । ୧୨ ।
ପିତା ଭାଇ ତାହାର ଯେ ବଶିଲେକ ଯାହା ।
ରୁକ୍ମଣୀର ମନରେ ଯେ ନ ଭାବଇ ତାହା । ୧୩ ।
କ୍ରୋଧରେ ରୁକ୍ମଣୀ ଯେ ଅତି ଗୁରୁତର ।
ହେ ମାତ, ତୁମ୍ଭେ ଗୋ ଉଦ୍ଧରି ମୋତେ ଧର । ୧୪ ।
ନୟନରୁ ଲୋତକ ଯେ ବହଇ ଝରଝର ।
ତାହା ଦେଖି ମାୟେ ଯେ ହୋଇଲେ କାତର । ୧୫ ।
ବେଗେ କର ଧଇଲେ ଯେ ଭୀଷ୍ମଙ୍କର ରାଣୀ ।
କିପାଇଁ ବିଷାଦ ଗୋ ହେଉ ତୁ ରୁକ୍ମଣୀ । ୧୬ ।

---

୧୦ । ସୋହଇ—ଶୋଭଇ କିମ୍ବା ସହଇ (ସହ୍ୟ କରିବା) ଅର୍ଥରେ ମଧ୍ୟ ଗ୍ରହଣ କରାଯାଇ ପାରେ ।

୧୨ । ଦମଘୋଷ—ଚେଦି ଦେଶର ଚନ୍ଦ୍ର ବଂଶରେ ଜଣେ ରାଜା । ସେ ଯଦୁବଂଶର ବାସୁଦେବଙ୍କ ଭଗିନୀ ସୁପ୍ରଭାଙ୍କୁ ବିବାହ କରିଥିଲେ । ସୁପ୍ରଭାଙ୍କ ଗର୍ଭରୁ ଶିଶୁପାଳ ଓ ଦନ୍ତବକ୍ର ଦୁଇପୁତ୍ର ଜନ୍ମ ଗ୍ରହଣ କରିଥିଲେ । ତନୟ—ପୁତ୍ର ।

୧୩ । ପିତା—ରୁକ୍ମଣୀଙ୍କ ପିତା—ଭୀଷ୍ମକ । ଭାଇ—ରୁକ୍ମଣୀଙ୍କର ଜ୍ୟେଷ୍ଠ ଭ୍ରାତା—ରୁକ୍ମୀ । ଭୀଷ୍ମକଙ୍କର ପାଞ୍ଚ ପୁତ୍ର—ରୁକ୍ମୀ, ରୁକ୍ମଣାକ୍ଷ, ରୁକ୍ମବାହୁ, ରୁକ୍ମଣ, ରୁକ୍ମକେଶ ।

୧୫ । ମାୟେ—ମାତା ।    ୧୬ । ଭୀଷ୍ମଙ୍କର—ଭୀଷ୍ମକଙ୍କର ।

Digitized by srujanika@gmail.com

ଶୁଣସି ଆଗୋ ମାତ ଏ ମୋର ବଚନ ।
ପିତା କରିଲେ ମୋତେ ଦମଘୋଷ ରାଣ । ୧୭ ।
କେଣିକ ମୁହିଁ ଯେ ଯିବଇଁ ପଳାଇ ।
ନୋହିଲେ ମରିବି ମାଗୋ ଅଗ୍ନିରେ ଝାସ ଦେଇ । ୧୮ ।
ତାହା ଶୁଣି ମାଏ ଯେ ବୋଇଲେ ଉତ୍ତର ।
ମନୋବାଞ୍ଛା ସିଦ୍ଧ ଗୋ ହେଉସି ତୋହର । ୧୯ ।
ରୁକ୍ମିଣୀ ବୋଇଲେ ମୋର ଅନ୍ୟରେ କାର୍ଯ୍ୟ ନାହିଁ ।
ଦ୍ୱାରକାପତି କୃଷ୍ଣଙ୍କୁ ଗୋ ବରିଆସ ଯାଇ । ୨୦ ।
ନୋହିଲେ ନଷ୍ଟସ୍ୱ ମାଗୋ ମରିବଇଁ ସତ୍ୟ ।
ଏହା ଶୁଣି ମାଏ ଯେ ବୋଧିଲେ ବହୁତ । ୨୧ ।
କ୍ଷୋଧରେ ରୁକ୍ମିଣୀ ଯେ ସଖୀଗଣ ରାଇ ।
କେମନ୍ତେ ଭେଟିବି ମୁଁ ଗୋ ନନ୍ଦର ତନୟି । ୨୨ ।
ନୋହିଲେ ଗୋ ଦାସୀ ଅଗ୍ନିରେ ଦେବି ଝାସ ।
ପାରିଲେ ତୁ ସଖୀ ଗୋ ଫେଡ଼ ମୋ ସନ୍ଦେଶ । ୨୩ ।
ତାହା ଶୁଣି ସଖୀ ଯେ ବୋଲଇ ଉତ୍ତର ।
ଚିତ୍ତରେ ଭାଳ ମାଗୋ ନୁହସି କାତର । ୨୪ ।

---

୧୭ । ଶୁଣସି—ଶୁଣ । ରାଣ—ରାଜା—ଏଠାରେ ଦମଘୋଷ ରାଣ ଅର୍ଥାତ୍ ଦମଘୋଷଙ୍କ ପୁତ୍ର—ଶିଶୁପାଳ ।
୧୯ । ହେଉସି—ହେଉ ।
୨୦ । ବରିଆସ—ବରଣ କରିଆସ ।
୨୧ । ବୋଧିଲେ—ସାନ୍ତ୍ୱନା ଦେଲେ ।
୨୨ । କ୍ଷୋଧରେ—ବିକଳରେ । ରାଇ—ଡାକ । ତନୟି—ତନୟ ବା ପୁତ୍ର ।
୨୩ । ଫେଡ - ଦୂର କରିବା । ସନ୍ଦେଶ – ସମସ୍ୟା ଅର୍ଥରେ ।
୨୪ । ଭାଳ—ଚିନ୍ତା କର । ନୁହସି—ନ ହୁଅ ।

Digitized by srujanika@gmail.com

ଦୂତ ପଠିଆଇ ଯେ ଆଣିବା ଚକ୍ରଧର ।
ନୋହିଲେ ନେବୁ ତୋତେ ଗୋ ଦ୍ୱାରକା ନଗର । ୨୫ ।
ରୁକ୍ମିଣୀ ବୋଇଲେ ଗୋ ଶୁଣ ମୋ ବଚନ ।
ବୃଦ୍ଧ ଭିକ୍ଷୁକ ବ୍ରାହ୍ମଣ ଗୋ ବେଗେ ଲୋଡ଼ିଆଣ । ୨୬ ।
ତାହା ଶୁଣି ଦାସୀ ଯେ ବେଗେ ଚଳିଗଲେ ।
ବୃଦ୍ଧ ଭିକ୍ଷୁକ ବ୍ରାହ୍ମଣେ ବେଗେ ସେ ଆଣିଲେ । ୨୭ ।
ଏ ମୋହର ବଚନ ଶୁଣ ହେ ଦ୍ୱିଜବର ।
ଲେଖା ନେବୁ ମୋର ଯେ ଦ୍ୱାରକା ନଗର । ୨୮ ।
ତାହା ଶୁଣି ବିପ୍ର ଯେ ହୋଇଲେ ଜଷତ ।
ତୋହର ଆଜ୍ଞାରେ ମାଗୋ ଯିବଇଁ ତ୍ୱରିତ । ୨୯ ।
ଆଜ ସେବନ ମୋର ଗୋ ହୋଇଲା ସୁଫଳ ।
ମୋତେ ଏବେ ଦୟା ଗୋ କରିଲେ ଗୋପାଳ । ୩୦ ।
ରୁକ୍ମିଣୀ ଦେବୀ ଯେ ଲେଖା ଲେଖି ଦେଲେ ।
ସାନନ୍ଦ ଚିତ୍ତରେ ଯେ ବ୍ରାହ୍ମଣ ଚଳିଗଲେ । ୩୧ ।
ସାନନ୍ଦ ଚିତ୍ତରେ ଯେ ବ୍ରାହ୍ମଣ ଚଳିଯାଇ ।
ଯାନ୍ତ୍ରେଣ ପ୍ରବେଶ ଯେ ଦ୍ୱାରକା ପୁରେ ହୋଇ । ୩୨ ।
ଶ୍ରୀହରି ଅଗ୍ରତେ ଯେ ବିପ୍ର ଉଭା ଯାଇ ।
ଶ୍ରୀମୁଖ ଠେକ ବୁଝିଲେ ବ୍ରହ୍ମାଣ୍ଡ ଗୋସାଇଁ । ୩୩ ।

---

୨୫ । ପଠିଆଇ—ପଠାଇ । ନଗର—ରାଜଭବନ ।
୨୬ । ଲୋଡ଼ିଆଣ—ଖୋଜିଆଣ ।
୨୮ । ଦ୍ୱିଜବର—ବ୍ରାହ୍ମଣ ଶ୍ରେଷ୍ଠ ।
୨୯ । ବିପ୍ର—ବ୍ରାହ୍ମଣ ।
୩୦ । ଗୋପାଳ—ଏଠାରେ ଶ୍ରୀକୃଷ୍ଣ ।
୩୨ । ଯାନ୍ତ୍ରେଣ—ଯାଆନ୍ତେଣ—ଯାଇ ।

Digitized by srujanika@gmail.com

ଦ୍ୱାରଗଡେ ଜାଣିଲେ ଏ ରୁକ୍ମଣୀର ଦୂତ ।
ସାନନ୍ଦ ହୋଇଲେ ସେ ଦେବ ଯେ ଅନନ୍ତ । ୩୪ ।
ତକ୍ଷଣେ ବ୍ରାହ୍ମଣକୁ ମାନ୍ୟ ଧର୍ମ କରି ।
ଆସନ ଭୋଜନ ଦେଇ ଯେ ବଚନ ପଚ୍ଚରି । ୩୫ ।
କେବଣ କାରଣେ ବିପ୍ର ଅଇଲ ହୋ ଏଥ ।
ବ୍ରାହ୍ମଣ ବୋଇଲେ ଦେବ ଶୁଣିବା ବୃତ୍ତାନ୍ତ । ୩୬ ।
ରୁକ୍ମଣୀ ନାମେଣ ଯେ ଭୀଷ୍ମଙ୍କ ଦୁଲଣ ।
ରୂପ ଯଉବନ ଯେ ଲକ୍ଷ୍ମୀଙ୍କ ହିଆଳି । ୩୭ ।
ରୁକ୍ମଣୀ ନାମରେ ଯେ ଭୀଷ୍ମକଙ୍କର ଝିଅ ।
ତୁମ୍ଭ ପାଦେ ତାହାର ଯେ ବଳଲକ ସ୍ନେହ । ୩୮ ।
ସେ ମୋହର ହସ୍ତେ ଯେ ଦେଇଅଛି ଲେଖ ।
ପାରିଲେ ପ୍ରଭୁ ତୁମ୍ଭେ ସଙ୍କଟୁ ତାକୁ ରଖ । ୩୯ ।
ତୁମ୍ଭଙ୍କୁ ବଞ୍ଛା ତାର ବଳଲକ ମନ୍ତ ।
କ୍ଷୁଧା ତୃଷା ତାର ଯେ ନିଦ୍ରା ନାହିଁ ଚିତ୍ତ । ୪୦ ।
ଏତେ ବୋଲି ବିପ୍ର ଯେ ହସ୍ତରେ ଲେଖ ଦେଇ ।
ହରି ପଢ଼ିଲେ ଯେ ତାହା ଆନନ୍ଦିତ ହୋଇ । ୪୧ ।
ତାହା ଶୁଣି ହରି ଯେ ପଢ଼ିଲେକ ଲେଖା ।
ଯିବାକୁ ଆନନ୍ଦ ଯେ ମନରେ ଅତି ସୁଖ । ୪୨ ।
ହେଲେ ଆମ୍ଭେ ତାହାଙ୍କୁ ହରି ଯେ ଆଣିବୁଁ ।
ଏ ମୋହର ସତ୍ୟ ବିପ୍ର ବେଗେ ତୁ କହିବୁ । ୪୩ ।

---

୩୬ । କେବଣ—କେଉଁ । ଏଥ—ଏଠାକୁ ।
୩୭ । ଦୁଲଣ—ଝିଅ । ହିଆଳି—ସମସ୍ୟା ବା ପ୍ରହେଳିକା ।
୩୮ । ବଳଲକ - ବଳକ (ପ୍ରାଚୀନ ପ୍ରୟୋଗ) ।
୪୦ । ମନ୍ତ—ମନ ।
୪୩ । ହରି – ହରଣ କରିବା ।

Digitized by srujanika@gmail.com

ତାହା ଶୁଣି ବିପ୍ର ଯେ ଆସନ୍ତି ବାହୁଡ଼ି ।
ମୁକତ ହୋଇଲା ବୋଲି ଯେ ଆନନ୍ଦ ଜଳେ ବୁଡ଼ି । ୪୪ ।
ବ୍ରାହ୍ମଣର ବିଳମ୍ବ ରୁକ୍ମଣୀ ଦେବୀ ଦେଖି ।
ଲୋତକ ଜାତ ପୂର୍ଣ୍ଣ କଲେକ ବେନି ଆଖି । ୪୫ ।
ସେବା ନ କଲି ଅବା ହରି ଯେ ଗଞ୍ଜସି ।
ସେ କାରଣେ ଅବା ଯେ ନୋହିଲେ ଶ୍ରୀହରି । ୪୬ ।
ମୋହର ଅଙ୍ଗରେ ଅବା ଅଛଇ ଅବଗୁଣ ।
ତାହା ଜାଣି ଅବା ଯେ ନୋହିଲେ ଭଗବାନ । ୪୭ ।
ଏସନ ଭାଳନ୍ତେ ବାମ ଯେ ନୟନ ସ୍ଫୁରିଲା ।
ମନେ ଭାଳି ଶୁଭ ଯେ ସଙ୍କେତ ଦେଖିଲା । ୪୮ ।
ଦୂତ ବ୍ରାହ୍ମଣ ଯେ ଆସୁଅଛନ୍ତି ଖରେ ।
ରୁକ୍ମଣୀ ଦେବୀ ତାହା ଯେ ଦେଖିଲେ ବେନି ଡୋଳେ । ୪୯ ।
ଆନନ୍ଦେ ଶୁତିଲେ ଯେ ଶିରେକ କର ଦେଇ ।
ଉଠି ଉଭା ହୋଇଣ ଯେ ବଚନ ପୁଚ୍ଛଇ । ୫୦ ।
କି କି ଶୁଭବାର୍ତ୍ତା କହସି ଗୋସାଇଁ ।
ଶୁଣିଲେ ଚିତ୍ତ ମୋର ଆନନ୍ଦ ମନ ହୋଇ । ୫୧ ।
ନେତ୍ର ବୋଲଣ ମାଗୋ ବୋଇଲେକ ତୋତେ ।
କହୁଛି ଆନ ମାଗୋ ନ ବିଚାର ଚିତ୍ତେ । ୫୨ ।

---

୪୫ । କଲେକ—କଲେ ।
୪୭ । ଅବଗୁଣ—ଦୁର୍ଗୁଣ ବା ଦୋଷ ।
୫୦ । ଶୁତିଲେ—ଶୋଇଲେ ।
୫୧ । କହସି—କହ ।
୫୨ । ବୋଇଲେକ—ବୋଇଲେ ।

Digitized by srujanika@gmail.com

ଆସୁଛନ୍ତି ମୋତେ ଯେ ପେଷିଲେକ ଆଗ ।
ବିପ୍ର ଲଗ୍ନ ଜାଣିମା ଗୋ ନେବେ ତୋତେ ବେଗ । ୫୩ ।
ରୁକ୍ମିଣୀ ବୋଇଲେ ବିପ୍ର ଚଳ ଆପଣା ମନ୍ଦିର ।
ମୋତେ ହୋ କାରଣ ତୁ କଲୁସି ଦ୍ୱିଜବର । ୫୪ ।
ରୁକ୍ମିଣୀ ଜାଣିଲେ ଯେ ବ୍ରାହ୍ମଣର ମନ ।
ହସ୍ତରେ ନ ଦେଲେ ତାଙ୍କୁ କଡ଼ାକର ଧନ । ୫୫ ।
ହରଷ ବରଷରେ ସେ ଚଳଇ ବିପ୍ରବର ।
ଲୋଭହୀନ ଦୁହ୍ୱ ସେ ସ୍ୱଳଇ ମନର । ୫୬ ।
ରୁକ୍ମିଣୀ ଦେବୀ ଯେ କୁବେର ହକାରି ।
ଆଜ୍ଞା ଦେଲେ ବେଗେ ଯେ ବିପ୍ରର ଦୁଃଖ ହରି । ୫୭ ।
ତକ୍ଷଣେ ବିଶ୍ୱକର୍ମା ଯେ ନବାଡ଼ିଲେ ପୁର ।
ଅଶେଷ ଧନ ଦେଇ ଯେ ପୂରିଲେ କୁବେର । ୫୮ ।
ବ୍ରାହ୍ମଣ ଗଲା ଯେ ହରଷ ମନ ହୋଇ ।
ଯାନ୍ତ୍ରେଣ ବିପ୍ର ଯେ ମନ୍ଦିର ଦ୍ୱାରେ ହୋଇ । ୫୯ ।
ତକ୍ଷଣେ ଦାସୀ ଯେ ଜତ୍ତର ପୁରେ ନେଲେ ।
ବ୍ରାହ୍ମଣୀକି ଦେଖି ବିପ୍ର ହରଷ ମନ ହେଲେ । ୬୦ ।
ମନେ ବିଚାରିଲେ ଲକ୍ଷ୍ମୀ ଅଟଇ ରୁକ୍ମିଣୀ ।
ଦ୍ୱାରିକା ପୁରେ ସେ ଯେ ହେଉ ଠାକୁରାଣୀ । ୬୧

---

୫୩ । ପେଷିଲେକ—ପେଷିଲେ, ପଠାଇଲେ ।
୫୪ । କଲୁସି—କଲୁ । କାରଣ—ହକାର ।
୫୬ । ଦୁହ୍ୱ—ଦୁଇ ।  ୫୭ । ହକାରି—ଡ଼କାଇ ।
୫୮ । ନବାଡ଼ିଲେ—ନିର୍ମାଣ କଲେ ।
୫୯ । ଯାନ୍ତ୍ରେଣ -- ଯାଆନ୍ତ୍ରେଣ—ଯାଇ ।

Digitized by srujanika@gmail.com

ଅନେକ ସନ୍ତୋଷେ ରହିଲେ ବପ୍ରବର ।
ଏଥୁ ଅନନ୍ତରେ ଯେ ଦେବ ଦାମୋଦର । ୭୨ ।
ରୁକ୍ମିଣୀ ଆଣିବାକୁ ହରଷ ମିତ କରି ।
ବଳରାମ ବୋଇଲେ ଯେ ଶୁଣ ହେ ମାୟାଧାରୀ । ୭୩ ।
ବହୁତ ରାଜ୍ୟରେ ଯେ ଅଛଇ ନନ୍ଦନୀ ।
ବାଛି ବରା ତୋତେ ଯେ କରାଇବା ପୁଣି । ୭୪ ।
ଦେହ ହଜ ମନେ ଭୂକ୍ତି ନ ବଞ୍ଚର ଆନ ।
ଯାରାଷଣ୍ଢ ଦୁଷ୍ଟ ଯେ ନୁହଇଟି ସାନ । ୭୫ ।
ହରି ବୋଇଲେ ଦେବ ନଷ୍ଟପ୍ରେ ଯିବ ମୂର୍ତ୍ତି ।
ଭକତ କାରଣେ ଜାତ ହୋଇଛି ମୋର ଦେହୀ । ୭୬ ।
ସର୍ବଦା କାଳରେ ସେ ରମଣୀ ମୋହର ।
ପଦୁନ ଜାତ ହେବେ ଗର୍ଭରେ ତାହାଙ୍କର । ୭୭ ।

---

୭୩ । ବଳରାମ—ବସୁଦେବଙ୍କ ପୁତ୍ର । ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠ ଭ୍ରାତା । ସେ ରୋହିଣୀ ଗର୍ଭରେ ଜନ୍ମ ହୋଇଥିଲେ ।

୭୫ । ଯାରାସନ୍ଧ—ଜରାସନ୍ଧ । ଜରାସନ୍ଧ ମଗଧର ରାଜା । ସେ ଓ ଚେଦି-ଦେଶର ରାଜା ଦମଘୋଷ ଗୋଟିଏ ବଂଶରୁ ଜାତ । ଦମଘୋଷଙ୍କ ପୁତ୍ର ଶିଶୁପାଳ ଜରାସନ୍ଧଙ୍କ ନିକଟରେ ପୁତ୍ରପରି ପାଳିତ ହୋଇଥିଲେ । ଜରାସନ୍ଧଙ୍କ ଜାମାତା କଂସକୁ ଶ୍ରୀକୃଷ୍ଣ ବଧ କରିଥିବାରୁ ଜରାସନ୍ଧ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଶତ୍ରୁତା ରହିଥିଲା ।

୭୬ । ଦେହୀ—ଦେହ ।

୭୭ । ପଦୁନ—ପ୍ରଦ୍ୟୁମ୍ନ । ଶ୍ରୀକୃଷ୍ଣଙ୍କ ଔରସରୁ ରୁକ୍ମିଣୀଙ୍କ ଗର୍ଭରୁ ପ୍ରଦ୍ୟୁମ୍ନ, ଚାରୁଦେଷ୍ଣ, ସୁଷେଣ ଆଦି ଦଶପୁତ୍ର ଓ ଚାରୁମତୀ ନାମରେ ଏକ କନ୍ୟା ଜାତ ହୋଇଥିଲେ ।

Digitized by srujanika@gmail.com

ମୂର୍ଚ୍ଛିତ ନ ଗଲେ ଦେବ ନୋହିବ ନା କରୁ ।
ସଜ ହୋଇଲେ ବେଗେ ଦେବ ଶିରିବତ୍ସ । ୬୮ ।
ମାତଳକ ଘଇ ଯେ ବୋଇଲେ ବଚନ ।
ନନ୍ଦଘୋଷ ରଥ ତୁ ସାଜ ହୋ ବହନ । ୬୯ ।
ଆଜ୍ଞା ପାଇ ମାତଳି ବହନ ବହନ ଚଳିଗଲା ।
ନନ୍ଦଘୋଷ ରଥ ଯେ ସାଜଣ ଆଣିଲା । ୭୦ ।
ରଥେ ବସି ବିଜୟ କଲେ ଚକ୍ରପାଣି ।
ବାଦ୍ୟନାଦ ଘୋଷ ଯେ ଶୁଭିଲା ତକ୍ଷଣି । ୭୧ ।
କୁଣ୍ଡିନଗ୍ର ପୁରେ ଯାଇ ହୋଇଲେ ପରବେଶ ।
ବାରତା ପାଇଲେ ଯେ ଖିଷ୍ମକଙ୍କ ରାଜହଂସ । ୭୨ ।
ବେଗେଣ ଖିଷ୍ମ ଯେ କଲେକ ସନମାନ ।
ଆସନୁ ଭୋଜନ ଯେ ନଗ୍ରରେ ଦେଲେ ସ୍ଥାନ । ୭୩ ।
ଅନ୍ତବଡ଼ ରାଜାମାନେ ନଗ୍ରେ ଛନ୍ତି ମାଡ଼ି ।
ଯାରଖଣ୍ଡେ ଭୁଲେ ଯେ ଅନେକ ସୈନ୍ୟ ବେଢ଼ି । ୭୪ ।

---

୬୮ । ଶିରିବତ୍ସ—ଶ୍ରୀବତ୍ସ—ଶ୍ରୀବତ୍ସ । ଶ୍ରୀବତ୍ସ ଜଣେ ଭକ୍ତ । ସେ କ୍ରୋଧରେ ପଦାଘାତ କରିଥିବାରୁ ଭକ୍ତବତ୍ସଳ ଭଗବାନ ଆଦରରେ ସେହି ଦୁଇପାଦ ଚିହ୍ନ ବକ୍ଷ ଦେଶରେ ଧାରଣ କରିଛନ୍ତି ।

୬୯ । ମାତଳି—ଦେବରାଜ ଇନ୍ଦ୍ରଙ୍କର ସାରଥି । ରାଇ—ଡାକ । ନନ୍ଦଘୋଷ—ଶ୍ରୀ ଜଗନ୍ନାଥଙ୍କ ରଥର ନାମ ।

୭୧ । ଘୋଷ—ଧ୍ୱନି ।

୭୨ । କୁଣ୍ଡିନଗ୍ର—ଭୀଷ୍ମକ ରାଜାଙ୍କ ରାଜଧାନୀ । ରାଜହଂସ—ରାଜଶ୍ରେଷ୍ଠ ।

୭୩ । ଆସନୁ ଭୋଜନ—ଆସନଠାରୁ ଭୋଜନ ପର୍ଯ୍ୟନ୍ତ; ଅର୍ଥାତ୍ ଅତିଥିଙ୍କର ସର୍ବପ୍ରକାର ସତ୍କାର କଲେ ।

୭୪ । ଛନ୍ତି—ଅଛନ୍ତି ।

Digitized by srujanika@gmail.com

ଦନ୍ତବକ୍ର ରଜାଙ୍କ ସଙ୍ଗତେ ନୃପତି ।
ଦମଘୋଷ ରଜା ଯେ ଅଟଇ ମହାକ୍ଷେଣୀ । ୭୫ ।
ଆରେକ ଜନରେ ଆସିବେକ ବର ।
ରୁକ୍ମଣୀ ହରିନେବେ ଦେବ ଚକ୍ରଧର । ୭୬ ।
ଯେତନ ନଗ୍ର ବାହାରେ ରହିଲେ ମୁରାରି ।
ହୁଳହୁଳି ଦଅ ଗୋ ଅଛୁଅ ଯେତେ ନାରୀ । ୭୭ ।
ରୁକ୍ମଣୀର ଦାସିଏ ପରିବାରି ଯେତେ
ମାର୍ଜନା ସାରି ଝୀନ ବସନ ପିନ୍ଧାଇ । ୭୮ ।
ଅଷ୍ଟ ଅଳଙ୍କାର ମାନ କଲେକ ଆଭରଣ ।
ଶୁଭ ଲଗ୍ନ ଡାକ ଯେ ପଡ଼ିଲା ଘନ ଘନ । ୭୯ ।
ପ୍ରଭାତର ନିତ୍ୟକର୍ମ ସାରିଲେ ରୁକ୍ମଣୀ ।
ମନେ ସୁମରିଲେ ଯେ ଦେବୀ ଠାକୁରାଣୀ । ୮୦ ।
ଅମ୍ବିଜ୍ଞ ସାରି କନ୍ୟା ପଡ଼ିଲାକ ହାକ ।
ଯାଗଣ୍ଡେ ଆଜ୍ଞା ଦେଲାକ ସୈନ୍ୟଯାକ । ୮୧ ।

---

୭୫ । ଦନ୍ତବକ୍ର—ଦମଘୋଷଙ୍କ ଔରସରୁ ସୁପ୍ରଭାଙ୍କ ଗର୍ଭରୁ ଦୁଇ ପୁତ୍ର ଜନ୍ମ ହୋଇଥିଲେ । ସେ ଦୁହେଁ ହେଲେ—ଶିଶୁପାଳ ଓ ଦନ୍ତବକ୍ର । ନୃପତି—ରଜା । ମହାକ୍ଷେଣୀ—ଏଠାରେ ମହାଯୋଦ୍ଧା ଅର୍ଥରେ ବ୍ୟବହୃତ ।

୭୬ । ଆସିବେକ—ଆସିବେ ।

୭୭ । ମୁରାରି—ବିଷ୍ଣୁ ।

୭୯ । କଲେକ—କଲେ । ଆଭରଣ—ଭୂଷଣ ।

୮୧ । ଅମ୍ବିଜ୍ଞ—ଅଭିଜ୍ଞ—ସୁପରିଚିତ ଦେବସ୍ଥଳ ଅର୍ଥରେ । ସୈନ୍ୟଯାକ—ସମସ୍ତ ସୈନ୍ୟ । ହାକ—ଡାକରା ।

Digitized by srujanika@gmail.com

ଦୁଷ୍ଟ କନ୍ୟାର ଯେ ଆସିଅଛୁ ଏଥି ।
ମନେ ପୂର୍ବ କର ଯେ ନିରୋଧି ରଖ ପଥି । ୮୨ ।
ଆଜ୍ଞା ପାଇ ପୁଣ ସେ ଯୋଦ୍ଧାମାନେ ଗଲେ ।
ସେ ଯାହାର ପଥ ସେ ନିରୋଧି ରଖିଲେ । ୮୩ ।
ରତ୍ନ ହାଣ୍ଡୋଳାରେ ସେ ବସିଲେ ରୁକ୍ମିଣୀ
ଅମ୍ବିକା ସ୍ଥାନକୁ ସେ ଗଲେକ ତକ୍ଷଣି । ୮୪ ।
ଦେଖି ଦେଉଳେ ପ୍ରବେଶ ହୋଇଲେ ରୁକ୍ମିଣୀ ।
ଦ୍ରୁଶନ କଲେ ପୁଣ ଦେବୀ ଠାକୁରାଣୀ । ୮୫ ।
ମାର୍ଜନା ବିଧି ଯେ କରଇ ମହାମାୟେ ।
ରତ୍ନ ଅଳଙ୍କାର ଯେ ମଣ୍ଡିଲେ ଦେବୀ କାୟେ । ୮୬ ।
ଧୂପ ମାପ ନଇବେଦ୍ୟ ଯେ ଗନ୍ଧ ପୁଷ୍ପ ଦେଲେ ।
ଦେଇଣ ରୁକ୍ମିଣୀ ଦେବୀ ପାଦରେ ନମିଲେ । ୮୭ ।
ଭୂମିରେ ଗଡ଼ମାଳ କରନ୍ତି ଯେ ସ୍ତୁତି ।
ନନ୍ଦର ନନ୍ଦନ ମାଗୋ ଦେବୁ ମୋତେ ପତି । ୮୮ ।
ଏତେ ବୋଲି ରୁକ୍ମିଣୀ ଯେ କରେ ଧରି ବର ।
ପାଷାଣୁ ବାହାରି ଦେବୀ ଯେ ହୋଇଲେ ସନ୍ତୋଷ । ୮୯ ।
ବର ଢାଳି ରୁକ୍ମିଣୀଙ୍କୁ ଅନେକ ଢଆର ।
ସ୍ୱୟଂ ତୁ କମଳା ମା ଗୋ ବସ୍ତୁ ମନୋହାରୀ । ୯୦ ।

---

୮୪ । ହାଣ୍ଡୋଳା—ଦୋଳା ।
୮୫ । ଦ୍ରୁଶନ—ଦର୍ଶନ ।
୮୭ । ଦେଇଣ—ଦେଇ । ମାପ – ପୁଷ୍ପ ଅର୍ଥରେ ।
୮୮ । ଗଡ଼ମାଳ—ସାଷ୍ଟାଙ୍ଗ ପ୍ରଣିପାତ ।
୮୯ । ପାଷାଣୁ—ପଥର ମୂର୍ତ୍ତିରୁ ।
୯୦ । ଢଆର—ବୁଝାଇବା ।

Digitized by srujanika@gmail.com

ସର୍ବକାଳରେ ମା ଗୋ ମୁଁ ତୁମ୍ଭର ଦାସୀ ।
ଦୋଷ କ୍ଷମାକର ମା ଗୋ ପଦ୍ମବନବାସୀ । ୯୧ ।
ନ କର ଚିନ୍ତା ମା ଗୋ ଅଇଲେ ଦେବହରି
ଦେଉଳ ଦୁଆରୁ ମା ଗୋ ନେବେ କର ଧରି । ୯୨ ।
ଏବେ ଯାଅ ମା ଗୋ ନାରାୟଣଙ୍କର ପାଶ
ଏତେ ବୋଲି ଦେଵୀ ଯେ ରହିଲେ ନିଜବାସ । ୯୩ ।
ଦେଉଳୁ ବାହାର ଯେ ହୋଇଲେ ରୁକ୍ମିଣୀ
ଆକାଶରେ ରଥ ଯେ ଟେକିଲେ ଚକ୍ରପାଣି । ୯୪ ।
ସ୍ବରଚକ୍ଷୁ ଭେଟ ଯେ ହୋଇଲେ ଦେବଜନ
ସାନନ୍ଦ ହୋଇଲେ ଯେ ଦେବ ନାରାୟଣ । ୯୫ ।
ବେଗେ ଧରିଲେ ହରି ରୁକ୍ମିଣୀ ବାମ କର
ନେଇଣ ବସାଇଲେ ଯେ ରଥରେ ଉପର । ୯୬ ।
ସୁମେଧା ନାମରେ ଯେ ଥିଲା ଏକ ସଖୀ
କର ଧରି ଆଣିଲେ ଯେ ଦେବ ପଦ୍ମଆଖି । ୯୭ ।
ସାନନ୍ଦ ଚିତ୍ତରେ ସେ ରଥରେ ବସାଇ
ଗଗନ ମାର୍ଗରେ ରଥ ନେଲେକ ଚଳାଇ । ୯୮ ।
ଦଣ୍ଡକ ଉତ୍ତାରେ ଯେ ଜାଣିଲେ ସର୍ବଜନ
ନେଲା-ନେଲା ବୋଲି ଯେ କଲେକ କ୍ରନ୍ଦନ । ୯୯ ।
କେ କାହାକୁ ନେଲା ଯେ ନ ପାରିଲେ ଜାଣି
ରୁକ୍ମିଣୀ ଧାଇଁଲା ଯେ ରେ-ରେକାର କରି । ୧୦୦ ।

---

୯୧ । ପଦ୍ମବନବାସୀ—ଲକ୍ଷ୍ମୀ ।
୯୭ । ପଦ୍ମଆଖି—ବିଷ୍ଣୁ ।
୯୯ । ଉତ୍ତାର—ଉତ୍ତାରୁ, ପରେ ।

Digitized by srujanika@gmail.com

ଦନ୍ତବକ୍ର ରଜା ସଙ୍ଗତେ ନୃପତି
ବ୍ରାହ୍ମଣେ ବସିଛନ୍ତି ଯେ ବେଦୀର ଚଉକତି । ୧୦୧ ।
ବେଦୀରେ ବସିଣ ଅଛଇ ଯେ ଶିଶୁପାଳ
ବାହାରେ ଆଶା ଅଛୁ ଯେ ହୃଦରେ ବିକଳ । ୧୦୨ ।
କେହୁ ବୋଲେ ମାର ଯେ କେହୁ ବୋଲେ ଧର
ଧାଇଁଣ ରୁକ୍ମଣ ଯେ ଭେଟିଲା ଚକ୍ରଧର । ୧୦୩ ।
ଗଦା ପିଟି ରଥେ ଯେ ଉଠେଲା ରୁକ୍ମଣ
ରୁକ୍ମଣର ବାମ କର ଯେ ଧଇଲେ ନାରାୟଣ । ୧୦୪ ।
ରୁକ୍ମଣକୁ ଧଇଲେ ଯେ ଦେବ ଚକ୍ରଧର
ଚକ୍ର ଧରି ତାର ଯେ କାଟୁଥିଲେ ଶିର । ୧୦୫ ।
ଶ୍ରୀକୃଷ୍ଣଙ୍କ ପାଦତଳେ ପଡ଼ିଲେ ରୁକ୍ମଣୀ
ତେଣୁ ସେ ରଖିଲେ ତାକୁ ଦେବ ଚକ୍ରପାଣି । ୧୦୬ ।
ସାତଗଣ୍ଠି କରି ଯେ ବାନ୍ଧିଲେ ରଥସ୍ତମ୍ଭ
ପଛେ ବଳଦେବ ସଙ୍ଗେ ଯାରାସନ୍ଧୁ ଦ୍ୱନ୍ଦ । ୧୦୭ ।
ଯୁଦ୍ଧର ବିଧାନ ଯେ କେ କରୁ ଚଦନ୍ତ
ଯାରାସନ୍ଧୁ ଯୁଦ୍ଧ ଯେ କଳକ ବହୁତ । ୧୦୮ ।
ଆନ୍ଦୋଳି ବଳଦେବ ଯେ ଧଇଲେ ମୂଷଳ
ବରଣ୍ଟି ହୋଇଲା ଯାର ପଲ୍ଲକ ଚଳ । ୧୦୯ ।

---

୧୦୧ । ଚଉକତ—ଚ୍ଚରଦଗ ।
୧୦୭ । ଦ୍ୱନ୍ଦ—ଦ୍ୱନ୍ଦ୍ୱ ।
୧୦୮ । କଳକ—କଲ୍ପ ।
୧୦୯ । ଆନ୍ଦୋଳି—ଆନ୍ଦୋଳି । ଯାର—ଜରାସନ୍ଧ । ପଲ୍ଲକ—ପଲ୍ଲକ ।
ବରଣ୍ଟି—ପଛେଇ ଆସିବା ।

Digitized by srujanika@gmail.com

ପୁଣି ରଥ ଘେନି ସେ ଉଠିଲା ଉପରକୁ
ଆକ୍ଷେପି ଫିଙ୍ଗିଲା ସେ ରଥ ଉପରକୁ । ୧୧୦ ।

କ୍ରୋଧେଣ ବଳଦେବ ସେ ଧଇଲେ ତାର ବାଳ
ଫିଙ୍ଗି ପକାଇଲେ ସେ ହୋଇଣ କ୍ରୋଧଭର । ୧୧୧ ।

ଶତେ ଯୋଜନରେ ଯାଇ ପଡ଼ିଲାକ ଯାଗ୍ର
ଭାଙ୍ଗିଲାକ ଥାଟ ସେ ସେସନେ ବସୁନ୍ଧରା । ୧୧୨ ।

ଲେଉଟି ବଳଦେବ ସେ ଭେଟିଲେ ଜଗନ୍ନାଥ
ଦେଖିଲେ ରୁକ୍ମଣକୁ ବାନ୍ଧିଛନ୍ତି ରଥ । ୧୧୩ ।

ତାହା ଦେଖି ରାମ ସେ ଫେଡ଼ିଲେ ବନ୍ଧନ
ବନ୍ଧୁକୁ ଶାସ୍ତି ତୁ ହୋ ନ ଦଅ ଭଗବାନ । ୧୧୪ ।

ଲଜ୍ଜାଭର ହୋଇଣ ସେ ରୁକ୍ମଣ ଚଳିଗଲା
ନଗ୍ରକୁ ନ ଯାଇ ସେ ବନରେ ପଶିଲା । ୧୧୫ ।

ଶିଶୁପାଳ ଗଲା ସେ ବେଘାରୁ ଲାଜ ପାଇ
ଖିଟେଷ୍ଟକ ବସ୍ତୁତ ସେ ଅପମାନ ହୋଇ । ୧୧୬ ।

ଦ୍ୱାରକାରେ ଶ୍ରୀହରି ହୋଇଲେ ପରବେଶ
ପିତା, ଜନନୀ ତାହାଙ୍କୁ ଦେଖିଣ ହରଷ । ୧୧୭ ।

ତତ୍ପଦନ ଜାଣିଣ ସେ ଖିଟେଷ୍ଟକ ଅଇଲେ
ରୁକ୍ମଣୀଙ୍କୁ ସମର୍ପି ଅନେକ ଧନ ଦେଲେ । ୧୧୮ ।

---

୧୧୧ । କ୍ରୋଧେଣ—କ୍ରୋଧରେ ।

୧୧୨ । ଭାଙ୍ଗିଲାକ – ଭାଙ୍ଗିଲା । ଥାଟ—ସେନାମ ।

୧୧୪ । ରାମ—ବଳରାମ । ଫେଡ଼ିଲେ—ଖୋଲିଲେ ।

Digitized by srujanika@gmail.com

ଆସିଣ ହୋଇଲା ଯେ ଚଉଠିର ଦିନ
ନଗ୍ର ଲିହ୍ବବାରେ ଯେ ଆନନ୍ଦ ସର୍ବଜନ । ୧୧୯ ।
ଆନନ୍ଦେ ଶ୍ରୀକୃଷ୍ଣ ଯେ ବିପ୍ରଙ୍କୁ ହକାର ।
ନଗ୍ର ଲିହ୍ବବାକୁ ଯେ କର୍ପୂର ଗୁଣ୍ଡ କର । ୧୨୦ ।
ଲିହନ୍ତି ଅନେକ ଯେ ମଚ୍ଛ କଚ୍ଛମାନ ।
ଲିହନ୍ତି ଯେ ଯୁଦ୍ଧ ଭାରତ ବଧାନ । ୧୨୧ ।
ଲିହନ୍ତି ଗୁଆ ଯେ ନଡ଼ୀକାଳ ତିଳ ।
ଖଜୁରି, କଦଳୀ, ଆମ୍ବ, ପଣସ, ଜମ୍ବିଳ । ୧୨୨ ।
ଲିହନ୍ତି ବନ ଜୀବ ଅନେକ ଜନ୍ତୁ ଜନ୍ତୁମାଳ ।
ଲିହନ୍ତି ଖଗ, ମୃଗ, ଗଣ୍ଡା ଯେ ଗଯ୍ଯଳ । ୧୨୩ ।
ସୁବର୍ଣ୍ଣର ସାତ ଯେ କଳସୀ ଆଣନ୍ତି ।
ବିପ୍ର ଭାଟ ଯଉତ ମଙ୍ଗଳ ପଢ଼ନ୍ତି । ୧୨୪ ।
ପ୍ରଥମେ କଳସୀ ଯେ ଧଇଲେ ଗଣପତ ।
କପୋଳେ ଯାହାର ଯେ ସିନ୍ଦୁର ଶୋଭିତ । ୧୨୫ ।
ଦ୍ୱିତୀୟ କଳସୀ ଯେ ବ୍ରହ୍ମାଏ ଧଇଲେ ।
ଉଚରେ ଚତୁର୍ମୁଖେ ବେଦ ଧୂନ କଲେ । ୧୨୬ ।

---

୧୧୯ । ଆସିଣ—ଆସି । ନଗ୍ର—ନଗର । ଲିହବା—ଲେଖିବା ବା ଚିତ୍ରଣ କରିବା ।

୧୨୦ । ହକାର—ଡକାଇ ।

୧୨୧ । ମଚ୍ଛ କଚ୍ଛମାନ—ମାଛ କଇଁଚ ପ୍ରଭୃତି । ଭାରତ ବଧାନ—ମହାଭାରତ ଯୁଦ୍ଧ ।

୧୨୨ । ନଡ଼ୀକାଳ—ନାରକେଳ—ନଡ଼ିଆ । ଜମ୍ବିଳ—ଟଭା ।

୧୨୪ । ଯଉତ—ଜ୍ୟୋତିଷ ।   ୧୨୫ । ଗଣପତ—ଗଣେଶ ।

୧୨୬ । ବେଦଧୂନ—ବେଦଧ୍ୱନ ।

Digitized by srujanika@gmail.com

ତୃତୀୟ କଳସୀ ଯେ ଧଇଲେ ବାସୁକୀ ।
ପାତାଳ ପୁରରେ ଯେହୁ ସେ ଆଧିପତି । ୧୨୭ ।
ଚତୁର୍ଥ କଳସୀ ଯେ ଧଇଲେ ପୁରନ୍ଦର ।
ଅମର ପୁରରେ ଯେ ଅଟଇ ଦଣ୍ଡଧର । ୧୨୮ ।
ପଞ୍ଚମ କଳସୀ ଯେ ଧଇଲେ ପୁଷୋତ୍ତମ ।
ସକଳ ଦେବଙ୍କର ସେହୁ ସେ ମୋକ୍ଷଧାନ । ୧୨୯ ।
ଷଷ୍ଠମ କଳସୀ ଯେ ଧଇଲେ ହଳଧର ।
ତାଳଧ୍ୱଜ ରଥ ବାହାନ ଯାହାର । ୧୩୦ ।
ସପ୍ତମ କଳସୀ ଯେ ଧଇଲେ ବରୁଣ ।
ସାଗରେ ଅଧିପତି ଅଟଇ ଯେହୁ ଜନ । ୧୩୧ ।
ଅଷ୍ଟମ କଳସୀରେ ସଭିଲ୍ଲ ବଧାନ ।
ଏଣେ ସଭିଲ୍ଲ ଯେ ଙ୍କଣ ଯାହାମାନ । ୧୩୨ ।
ହୁଳହୁଳ ଦଅଗୋ ଅହ୍ୱଅ ଯେତେ ନାରୀ ।
ବର-କନ୍ୟାଙ୍କର ଶୁଭ ସେ ହଉଛି । ୧୩୩ ।
ହରିହରି ବୋଲି ଆମ୍ଭେ ଡାକ ଯେ ଦେଉଛୁଁ ।
କଳସ ଗୋଟିଏ ଆମ୍ଭେ ଏଥିରୁ ନେଉଛୁଁ । ୧୩୪ ।

---

୧୨୮ । ପୁରନ୍ଦର—ଇନ୍ଦ୍ର । ଶତ୍ରୁ ନଗରୀ ବିଦୀର୍ଣ୍ଣ କରିପାରନ୍ତି ବୋଲି ଇନ୍ଦ୍ରଙ୍କର ଏପରି ନାମକରଣ ହୋଇଛି । ଦଣ୍ଡଧର—ଶାସକ ।

୧୨୯ । ପୁଷୋତ୍ତମ—ପୁରୁଷୋତ୍ତମ— ଜଗନ୍ନାଥ ।

୧୩୦ । ଷଷ୍ଠମ—ଷଷ୍ଠ । ହଳଧର—ବଳରାମ । ତାଳଧ୍ୱଜ—ବଳଦେବଙ୍କ ରଥ ।

୧୩୧ । ବରୁଣ—ପଶ୍ଚିମ ଦିକ୍‌ପାଳ ଓ ଜଳାଧିପତି ।

୧୩୩ । ଅହ୍ୱଅ—ସଧବା ନାରୀ ।

Digitized by srujanika@gmail.com

ମୁଖ ପୂରେଇ ଗୁଆ, ତାମ୍ବୁଳ ଖାଉନ୍ତୁ ।
ବର-କନ୍ୟାଙ୍କୁ ଯେ ଆଶିଷ୍ୟ ଦେଉନ୍ତୁ । ୧୩୫ ।
ବର-କନ୍ୟାଙ୍କର ଯେ ଶୁଭେ ଦିନ ଯାଉ ।
ଲକ୍ଷ୍ମୀ ନାରାୟଣଙ୍କର ଯେ ପରମ ଆୟୁ ପାଉ । ୧୩୬ ।
ବର-କନ୍ୟା ସେ ଯେ ଖାଇଲେ ଖିରି, ପିଠା ।
ମାହାଲିକ ବୋଇଲେ ପୃଚ୍ଛରେ ଅଇଁଠା । ୧୩୭ ।
ବରଯାତ୍ରୀ ଲୋକ ଯେ ଖାଇଲେ ପିଠା, ଭାତ ।
ମାହାଲିର ମୁଣ୍ଡରେ ଯେ ପୋଛିଲେକ ହସ୍ତ । ୧୩୮ ।
ବର-କନ୍ୟା ବେନି ଯେ ଗଲେ ଘରବାଟେ ।
ମାହାଲିକୁ ବିଦା କଲେ ତେନ୍ତୁଳିର ଝାଣ୍ଟେ । ୧୩୯ ।
ବର-କନ୍ୟା ଏ ଯେ ସୁଖେ ଦିନ ନେଲେ ।
ବଳରାମ ଦାସ ଯେ ଗୀତରେ ଭଣିଲେ । ୧୪୦ ।
ଚଉଠି ଗଣସନ ଏହୁ ବେନି ଦିନ ।
ଏ ଗୀତ ପଢ଼ି ଶୁଣାଇବ ଯେ ଶୁଭ ଲଗ୍ନ । ୧୪୧ ।

●

---

୧୩୫ । ତାମ୍ବୁଳ—ପାନ । ଆଶିଷ୍ୟ—ଆଶିଷ ।
୧୩୭ । ମାହାଲିକ—ନୀଚବର୍ଣ୍ଣର ଲୋକକୁ । ପୃଚ୍ଛ—ପୋଛିବା, ପରିଷ୍କାର କରିବା ।
୧୩୮ । ପୋଛିଲେକ—ପୋଛିଲେ ।
୧୩୯ । ତେନ୍ତୁଳିର ଝାଣ୍ଟେ—ତେନ୍ତୁଳିଡାଙ୍ଗ ବା ଗୁଞ୍ଚରେ ମାଡ଼ ଦେଇ—ଏହି ଅର୍ଥରେ ।
୧୪୧ । ଗଣସନ୍—ପଶ୍ଚିମ ଓଡ଼ିଶାରେ ମଙ୍ଗଳପାକ, ଦଅଁମଙ୍ଗୁଳା ଇତ୍ୟାଦି (ବିବାହ ପୂର୍ବଦିନ)କୁ 'ଗଣସନ୍' କୁହାଯାଏ ।

●

Digitized by srujanika@gmail.com

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର କବି ବଳରାମ ଦାସ-ବିରଚିତ 'ଶ୍ରୀବେଢ଼ା' ବା 'ରୁକ୍ମିଣୀ ବିବାହ ଲେଖନ' ଆମର ସାଂସ୍କୃତିକ ଇତିହାସରେ ଏକ ନୂତନ ଆବିଷ୍କାର । ରାଜ୍ୟର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବିବାହୋତ୍ସବରେ ଲୋକାଚାରର ଅଙ୍ଗବିଶେଷ ରୂପେ ଏହି ରଚନାଟି 'ମଙ୍ଗଳ ଗୀତ' ଭାବରେ ବ୍ୟବହୃତ ହୋଇଥାଏ । ଶ୍ରୀକୃଷ୍ଣ-ରୁକ୍ମିଣୀ-ପରିଣୟରୂପୀ ପୌରାଣିକ ଆଖ୍ୟାନ ଭିତ୍ତିକ 'ଶ୍ରୀବେଢ଼ା'ରେ ମାନବୀୟ ଆବେଦନ ଓ ଲୋକମୁଖୀ ଭାବନା ବିଶେଷ ଉଲ୍ଲେଖନୀୟ । ଏକ ସୁନ୍ଦର ସାମାଜିକ ପରମ୍ପରାର ସଙ୍କେତ ବହନ କରୁଥିବାରୁ ଏବଂ ପ୍ରାଚୀନ ଓଡ଼ିଆ ସାହିତ୍ୟଧାରାର ଅନ୍ୟତମ ସାର୍ଥକ ପରିଚାୟକ ହୋଇଥିବାରୁ ଏହାର ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

ପ୍ରାବନ୍ଧିକ ଓ ଶିଶୁ ସାହିତ୍ୟର ଗବେଷକ ଡକ୍ଟର ମହେନ୍ଦ୍ର ମହାନ୍ତି (୧୯୪୭-) ଆମର ସମାଲୋଚନା ସାହିତ୍ୟ କ୍ଷେତ୍ରରେ ସୁପରିଚିତ । ବିଶେଷତଃ ଓଡ଼ିଆ ଲୋକନାଟ୍ୟ ଓ ଗଣନାଟ୍ୟର ସନ୍ଧାନ ଓ ସମୀକ୍ଷା କ୍ଷେତ୍ରରେ ସେ ଆପଣା କୃତିତ୍ୱର ପରିଚୟ ଦେଇଛନ୍ତି । ଭଦ୍ରକ କଲେଜ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ତଥା ଗବେଷଣା କାର୍ଯ୍ୟ ପରେ ସମ୍ପ୍ରତି ସେ ବାଲେଶ୍ୱର ଜିଲ୍ଲାର ପାନିଆବନ୍ଧ କଲେଜରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ ଅବସ୍ଥାପିତ । ରଚିତ ଗ୍ରନ୍ଥ— ଗାଳ୍ପିକ ସୁରେନ୍ଦ୍ର ମହାନ୍ତି (୧୯୮୦), ଓଡ଼ିଆ ଶିଶୁ ସାହିତ୍ୟ (ଗବେଷଣା ପ୍ରବନ୍ଧ) ପ୍ରଭୃତି ।

Digitized by srujanika@gmail.com